# ୩ଟି ଷଣ୍ଢ ଚନିବ



## ଚନ୍ଦ୍ରନାଥ ମିଶ୍ର

# ଏଠି ସବୁ ଚଳିବ

(ସମାଲୋଚନାମୂଳକ ବ୍ୟଙ୍ଗ କବିତା)



ଲୋକନାଥ ମିଶ୍ର (ଭରଦ୍ୱାଜ)

ଓଡ଼ଗାଁ, ନୟାଗଡ଼-୭୫୨୦୮୧

ସଂକଳନର ନାମ : ଏଠି ସବୁ ଚଳିବ
(ସମାଲୋଚନାମୂଳକ ବ୍ୟଙ୍ଗ କବିତା)
ରଚନା : ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)
"ବାଣୀ ନିକେତନ" ଓଡ଼ଗାଁ
ଜି-ନୟାଗଡ଼, ପିନ୍ -୭୫୨୦୮୧
ଫୋନ୍ ନଂ : ୦୬୭୫୩-୬୦୧୪୮
ରଚନାକାଳ : ୧୯୬୬ରୁ ୨୦୦୨
ପ୍ରଥମ ସଂସ୍କରଣ : ୧୦୦୦, ବିଜୟାଦଶମୀ - ୨୦୦୨
ଅଳଂକରଣ : ବିନୋଦ, ଭୁବନେଶ୍ୱର
ପ୍ରକାଶକ : 'ପରମ୍ପରା ପ୍ରକାଶନ, ନୟାଗଡ଼

ଡି.ଟି.ପି. : ପ୍ରଧାନ ଡି.ଟି.ପି., କଳ୍ପନା କମ୍ପ୍ଲେକ୍ସ, ନୟାଗଡ଼
ମୁଦ୍ରଣ : ପଦ୍ମା କମର୍ସିଆଲ ସେଣ୍ଟର, ଭୁବନେଶ୍ୱର, ଫୋନ୍-୪୦୨୧୬୨
ମୂଲ୍ୟ : ଟ. ୪୫.୦୦ (ପଞ୍ଚଚାଳିଶ ଟଙ୍କା ମାତ୍ର)

*Name of Book* : **"Ethi Sabu Chaliba"**
(Samalochana Mulaka Byanga Kabita)
*Written by* : **Lokanath Mishra** (Bharadwaj)
At/P.O- Odagaon, (Bani Niketan)
Dist- Nayagarh, PIN- 752081
Ph. No : 06753-60148
*Period of Writing* : 1966-2002
*First Edition* : 1000, Bijaya Dashami - 2002
*Publisher* : Parampara Prakashan, Nayagarh

*Cover Design* : *Binod, Bhubaneswar*
*D.T.P.* : Pradhan D.T.P., Kalpana Complex, NGR
*Printing* : Padma Comercial Centre, Bhubaneswar,
Price : Rs. 45.00 - (Fortyfive rupees only)

# ସୂଚୀପତ୍ର

# ନିଜକଥା

କଟକ ଜିଲ୍ଲାର ସାଲେପୁର ନିକଟବର୍ତ୍ତୀ ନାହାଙ୍ଗ ଗ୍ରାମ ପଞ୍ଚାୟତରେ ସରକାରୀ ଚାକିରୀ କରୁଥିବା ସମୟରେ (୧୯୫୮-୧୯୬୬) ସମୀପବର୍ତ୍ତୀ ଗୋପାଳ ପୁର ଗ୍ରାମ ପଞ୍ଚାୟତର ଭଦ୍ରେଶ୍ୱର ଗ୍ରାମରେ "ବୀର ଭଦ୍ରେଶ୍ୱର ମନ୍ଦିର" (କଳା ପାହାଡ଼ ଦ୍ୱାରା ଭଗ୍ନ ହୋଇ, ପରବର୍ତ୍ତୀ ସମୟରେ ଅର୍ଦ୍ଧ ଭଗ୍ନ ମନ୍ଦିରକୁ ପୂର୍ଣ୍ଣାଙ୍ଗ କରାଯାଇଥିବା) ଏକ ପ୍ରାଚୀନ ଶୈବପୀଠରେ ପ୍ରତିବର୍ଷ ମାଘ ପୂର୍ଣ୍ଣିମା ସମୟରେ ନବଦିନ ବ୍ୟାପୀ ବିଶ୍ୱଶାନ୍ତି ଯଜ୍ଞାନୁଷ୍ଠାନ ହୋଇଥାଏ । ଦିନବେଳେ ଯଜ୍ଞ ଏବଂ ରାତ୍ରିରେ ଅପେରା ଓ ଯୁଆ ଖେଳ ହୁଏ । ଯୁଆ ଖେଳବାଲା ଯଜ୍ଞ ଓ ଅପେରାପାଇଁ ମୋଟା ଅଙ୍କର ଚାନ୍ଦା ଦିଅନ୍ତି । ଯଜ୍ଞାନୁଷ୍ଠାନର ଉଦ୍ଦେଶ୍ୟ ମହତ ହୋଇଥିଲେ ମଧ୍ୟ, ଯୁଆ ଖେଳ ଭଳି ଅର୍ଥରେ, ଯଜ୍ଞ ଭଳି ପବିତ୍ର ଆଧ୍ୟାତ୍ମିକ କାର୍ଯ୍ୟ ପରିଚାଳିତ ହେଉଥିବାରୁ ଲେଖକଙ୍କର ମନ ବିଦ୍ରୋହ କରିଉଠେ । ଫଳରେ ପ୍ରଥମ ସମାଲୋଚନା ମୂଳକ ବ୍ୟଙ୍ଗ କବିତା "ଭଦ୍ରେଶ୍ୱର ଯୁଆଯଜ୍ଞ" ରଚିତ ହୁଏ ୧୯୬୬ରେ । ତା ପରେ ବଲାଙ୍ଗୀର ବଦଳି ହୁଏ ଏବଂ ଅସହ୍ୟ ଏ ଦୁର୍ନୀତି ଦୁର୍ବାର" ଓ "ତୋ ବଡ଼ଲୋକୀ ତୋ ଘରେ" ୧୯୬୭-୬୮ରେ ରଚିତ ହୁଏ । କଳାହାଣ୍ଡି ଜିଲ୍ଲାର "କର୍ଲାପଡ଼ା"ରେ ଥିବା ସମୟରେ ଗାନ୍ଧୀ ସତବାର୍ଷିକୀ ଉଦ୍ଦେଶ୍ୟରେ ୧୯୬୯-୭୦ରେ "ଜନନୀର ବିଳାପ" (ଗାନ୍ଧି ସ୍ମରଣେ) ରଚିତ ହୋଇ କର୍ଲାପଡ଼ା ହାଇସ୍କୁଲରେ ଆୟୋଜିତ ଗାନ୍ଧୀ ଶତବାର୍ଷିକୀ ଉତ୍ସବରେ ପଠିତ ଓ ପ୍ରଶଂସିତ ହୁଏ । ପରେ ପରେ ସମସାମୟିକ ଘଟଣାବଳୀ ଉପରେ ଆଧାରିତ ଅନ୍ୟାନ୍ୟ ବ୍ୟଙ୍ଗ କବିତା ଗୁଡ଼ିକର ସୃଷ୍ଟି । ପାଶ୍ଚାତ୍ୟଶିକ୍ଷା ଓ ସଂସ୍କୃତିର ଅନୁକରଣରେ ଭାରତୀୟ ଜନ ଜୀବନରେ ସୃଷ୍ଟି ହୋଇଥିବା ସାମାଜିକ ବିଶୃଙ୍ଖଳା ଓ ନୈତିକ ସ୍ଖଳନର ସଚେତନତା ସୃଷ୍ଟି ଉକ୍ତ ସମାଲୋଚନା ମୂଳକ ବ୍ୟଙ୍ଗ କବିତା ଗୁଡ଼ିକ ରଚନାର ଲକ୍ଷ୍ୟ । ବିଭିନ୍ନ କବି ସମ୍ମିଳନୀରେ କବିତା ଗୁଡ଼ିକର ଆବୃତ୍ତି ଏବଂ ପତ୍ର ପତ୍ରିକାରେ ପ୍ରକାଶନ ପରେ ଅନେକ ପାଠକୀୟ ପ୍ରଶଂସା ପତ୍ର ପାଇ ସଂକଳନଟିଏ ପ୍ରକାଶ କରିବାର ପ୍ରେରଣା ପ୍ରାପ୍ତ ।

ସୁବିଖ୍ୟାତ ବ୍ୟଙ୍ଗ ସାହିତ୍ୟିକ ତଥା "ଦୁମୂର୍ଖ"ର ସଂପାଦକ ଶ୍ରୀଯୁକ୍ତ ପଣ୍ଡିତ ଅଚ୍ୟୁତାନନ୍ଦକର ମହୋଦୟ ସଂକଳନଟି ପାଇଁ ସ୍ୱଅଭିମତ ପ୍ରଦାନ କରିଥିବାରୁ ସେ ମହାଶୟଙ୍କ ନିକଟରେ କୃତଜ୍ଞତା ଜଣାଉଛି । ଶ୍ରୀମାନ ମନୋମୋହନ ଆଚାର୍ଯ୍ୟ ପାଣ୍ଡୁଲିପିଟି ସଂଶୋଧନ କରି ଦେଇଥିବାରୁ ତାଙ୍କୁ ଅନେକ ଅନେକ ଧନ୍ୟବାଦ ଅର୍ପଣ କରୁଛି । ସଂକଳନଟି ପାଠକୀୟ ସ୍ୱୀକୃତି ପ୍ରାପ୍ତ ହେଲେ ଲେଖକର ଶ୍ରମ ସାର୍ଥକ ହେବ । ଇତି ।

ତା ୨୧/୪/୦୨
ଓଡ଼ଗାଁ, ନୟାଗଡ଼

ବିନୀତ ଲେଖକ
ଶ୍ରୀରାମ ନବମୀ

# ଅଭିମତ

ପଣ୍ଡିତ ଅଚ୍ୟୁତାନନ୍ଦ କର
ସଂପାଦକ "ଦୁର୍ମୁଖ"

ରଘୁନାଥ ଜିଉ ଲେନ୍
ଚେଲେଙ୍ଗା ବଜାର କଟକ, ୭୫୩୦୦୯
ତା ୮/୪/୨୦୦୨

ଶ୍ରୀ ଯୁକ୍ତ ଲୋକନାଥ ମିଶ୍ର ଭରଦ୍ୱାଜଙ୍କ ଲିଖିତ " ଏଠି ସବୁ ଚଳିବ" ବ୍ୟଙ୍ଗ କବିତା ସଂକଳନଟି ପଢି ବ୍ୟଙ୍ଗ ସାହିତ୍ୟର ଆଗାମୀ ଉଜ୍ଜ୍ୱଳ ସମ୍ଭାବନାକୁ ଅସ୍ୱୀକାର କରି ହେବନି ବୋଲି ମଣିଲି । ଏହି ସଂକଳନରେ କବି ଶ୍ରୀ ମିଶ୍ର ୪୭ ଟି କବିତା ସ୍ଥାନୀତ କରିଛନ୍ତି । କବିତା ଗୁଡ଼ିକର ଭାଷା ସରଳ, ଭାବ ରସାଳ ଏବଂ ସମାଜ ପାଇଁ ବ୍ୟଙ୍ଗାତ୍ମକ ବାର୍ତ୍ତାବହନ କରି ଅଧିକାଂଶ କବିତା ପାଠକଙ୍କ ହୃଦୟ କୁ ଯଥେଷ୍ଟ ସ୍ପର୍ଶ କରି ଦେଇ ପାରିବ । କବି ନିଜ ସାଧନା ପଥରେ ଦୃଢ ବିଶ୍ୱାସ ବୋଧର ଆଭାସ ପ୍ରତ୍ୟେକ କବିତାରେ ଫୁଟାଇ ପାରିଛନ୍ତି । ତାଙ୍କର ଆଗାମୀ ଜୀବନ ନିଶ୍ଚୟ ଉଜ୍ଜ୍ୱଳ, ଏହା ଅନୁମାନ କରାଯାଏ । କବି ଯଶସ୍ୱୀ ହୁଅନ୍ତୁ, ଦୀର୍ଘଜୀବୀ ହୁଅନ୍ତୁ, ଏହାହିଁ କାମନା ।

ପଣ୍ଡିତ ଅଚ୍ୟୁତାନନ୍ଦ କର
ସଂପାଦକ "ଦୁର୍ମୁଖ"
ରାଜାବଗିଚା, କଟକ,୭୫୩୦୦୯
ତା ୮.୪.୨୦୦୨

# "ଏଠି ସବୁ ଚଳିବ"



କିଛି ଏଠି ମନା ନାହିଁ ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ
ଏଠି, ହସିବାକୁ ମନାନାହିଁ, କାନ୍ଦିବାକୁ ମନା ନାହିଁ
ବଂଚିବାକୁ ମନା ନାହିଁ, ମରିବାକୁ ମନା ନାହିଁ
ଭିଟା ମାଟି ଛାଡ଼ିବା ମନା ନାହିଁ, ପିଲା ବିକ୍ରି ମନାନାହିଁ
କୋଟି, କୋଟି ଟଙ୍କା ଏଠି ମାରି ଖାଇବା ମନା ନାହିଁ
କିଛି ଏଠି ମନା ନାହିଁ ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ ।୧।




ଏଠି ଯୌତୁକ ନିର୍ଯାତନା ମନା ନାହିଁ, ବଧୂହତ୍ୟା ମନା ନାହିଁ
ନାରୀ ଧର୍ଷଣ ମନା ନାହିଁ, ନାରୀ ଅପହରଣ ମନାନାହିଁ
ସୁନ୍ଦରୀ ପ୍ରତିଯୋଗିତା ମନାନାହିଁ, ଅଙ୍ଗ ପ୍ରଦର୍ଶନ ମନା ନାହିଁ
ଡକାୟତି ମନା ନାହିଁ, ହାର ଛିଣ୍ଡାଇବା ମନା ନାହିଁ
ଜଙ୍ଗଲ ସୁରକ୍ଷା ମନା ନାହିଁ, ଗଛ ହଣା ମନା ନାହିଁ
ଡାକ୍ତର ଖାନାରେ ଔଷଧ ବିକ୍ରି ମନା ନାହିଁ, ଘରୋଇ ଚିକିତ୍ସା ମନା ନାହିଁ
କିଛି ଏଠି ମନା ନାହିଁ, ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ ।୨।

ଏଠି ଲାଞ୍ଚଦେବା ମନା ନାହିଁ, ଲାଞ୍ଚ ନେବା ମନା ନାହିଁ
ବିବାହ କରିବା ମନା ନାହିଁ, ଛାଡ଼ପତ୍ର ଦେବା ମନା ନାହିଁ
ପାଠ ପଢାଇବା ମନାନାହିଁ, ଟିଉସନ କରିବା ମନା ନାହିଁ
ଦୁର୍ନୀତି କରିବା ମନା ନାହିଁ, ଧରପଗଡ଼ ମନା ନାହିଁ
ପ୍ରିୟା ପ୍ରୀତି ମନା ନାହିଁ, ହିଂସା ଦ୍ୱେଷ ମନା ନାହିଁ



ଗୀତା ଛୁଇଁବା ମନା ନାହିଁ, ମିଛ କହିବା ମନା ନାହିଁ
କିଛି ଏଠି ମନା ନାହିଁ, ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ ।୩।



ଏଠି ସ୍ଥାନ ସଂରକ୍ଷଣ ମନା ନାହିଁ, ଜାତିଭିତିକ ପଦୋନ୍ନତି ମନା ନାହିଁ
ଚାକିରୀ ନ ଦେବା ମନା ନାହିଁ, ଛଟେଇ କରିବା ମନା ନାହିଁ
ବଦଳି କରିବା ମନା ନାହିଁ, କ୍ୟାନ୍‌ସେଲ କରିବା ମନା ନାହିଁ
ଦାଦାଗିରି ମନା ନାହିଁ, ଚାନ୍ଦା ଆଦାୟ ମନା ନାହିଁ
ମଦବିକ୍ରି ମନା ନାହିଁ, ବେଶ୍ୟା ବୃତ୍ତି ମନା ନାହିଁ
ଅପମିଶ୍ରଣ ମନା ନାହିଁ, ଦଳ ବଦଳ ମନା ନାହିଁ
ପ୍ରତିଶୃତି ମନା ନାହିଁ, ଭୋଟ ଜିତିବା ମନା ନାହିଁ
କିଛି ଏଠି ମନା ନାହିଁ, ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ ।୪।



ଏଠି ମଧ୍ୟାହ୍ନ ଭୋଜନ ମନା ନାହିଁ, ପାଠ ପଢାନହେବା ମନା ନାହିଁ
ବୃତ୍ତି କର ମନା ନାହିଁ, ବନ୍ଧ ପାଳନ ମନା ନାହିଁ
ଦେଶ ସେବା ମନା ନାହିଁ, ସରକାରୀ ସଂସ୍ଥା ସବୁ ଘରୋଇ କରଣ ମନା ନାହିଁ
ମାତୃଭାଷା ପ୍ରୀତି ମନା ନାହିଁ, ଇଂଗ୍ଲିସ୍ ମିଡ଼ିୟମ ସ୍କୁଲ ଖୋଲିବା ମନା ନାହିଁ
ବିଦେଶୀ ଋଣ ଆଣିବା ମନା ନାହିଁ, ଆତ୍ମସାତ କରିବା ମନା ନାହିଁ
କିଛି ଏଠି ମନା ନାହିଁ, ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ ।୫।



ଏଠି କବିତା ଲେଖିବା ମନା ନାହିଁ
କବି ବୋଲେଇବା ମନା ନାହିଁ
ସାହିତ୍ୟ କରିବା ମନା ନାହିଁ, ନିଜର ଡିଣ୍ଡିମ ନିଜେ ପିଟିବା ମନା ନାହିଁ ।
ଧରାଧରି କରିବା ମନା ନାହିଁ, ସମ୍ବର୍ଦ୍ଧନା ଓ ମାନପତ୍ର ପାଇବା ମନା ନାହିଁ

ପତ୍ରିକା କରିବା ମନା ନାହିଁ
ଟଙ୍କା ନେଇ ଆଜ୍ଞେବାଜେ ଲେଖା ଛାପିବା ମନା ନାହିଁ
କିଛି ଏଠି ମନା ନାହିଁ, ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ ।୬।

ଏଠି ସନ୍ତ୍ରାସବାଦ ମନା ନାହିଁ, ଯେହାଦ୍ 'ନାଁରେ ଆକ୍ରମଣ ମନା ନାହିଁ
ବିମାନ ଅପହରଣ ମନା ନାହିଁ, ସନ୍ତ୍ରାସବାଦୀଙ୍କୁ ଖଲାସ କରିବା ମନାନାହିଁ
ବିଧାନ ସଭା ଆକ୍ରମଣ ମନା ନାହିଁ
ସଂସଦ ଭବନ ଆକ୍ରମଣ ମନା ନାହିଁ
ବମ୍ ବ୍ଲାଷ୍ଟ ମନା ନାହିଁ, ପାର୍ଶଲ୍ ବୋମା ମନା ନାହିଁ
ଜାମ୍ମୁ କାଶ୍ମିରରେ ଶହ ଶହ ନିରୀହ ବ୍ୟକ୍ତି ମରିବା ମନା ନାହିଁ
ଶାସକ ଗୋଷ୍ଠି ନିରବ ଦ୍ରଷ୍ଟା ସାଜିବା ମନା ନାହିଁ
କିଛି ଏଠି ମନା ନାହିଁ, ସବୁ ଏଠି ଚଳିବ
ବିଧିର ବିଧାନ ଯାହା ଅବଶ୍ୟ ତା ଫଳିବ





# କହିଲେ କହିବ କହୁଚି

କହିବାକୁ ଲାଜ ମାଡୁଛି
ନକହିଲେ ଦେଶ ବୁଡୁଛି
ଅଣ୍ଟିଛୁରୀ ତଣ୍ଟି ଫାଡୁଛି
ନମରି ଜୀବନ ଛାଡୁଚି
ବହୁ କଷ୍ଟ ଲବ୍ଧ ସ୍ୱାଧୀନତା ଆମ
ଆଜି ବିପନ୍ନ ହେବାକୁ ଯାଉଛି
ଭାଇ, ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୧।

ବିଦେଶୀଙ୍କୁ ଦେଶୁ ତଡ଼ିଲେ
ସ୍ୱଦେଶୀ ଗାଦୀରେ ଚଢିଲେ
ଗଣତନ୍ତ୍ର ଦେଶେ ଗଢିଲେ
ଗାନ୍ଧିଙ୍କ ଆଦର୍ଶ ବୁଡ଼ିଲେ
ଚୋର, ଟାଉଟର, ଲୁଟିଖିଆଦଳ
ଯେଝା ବାଟେ ଯିଏ ଯାଉଚି
ଭାଇ ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୨।




ବିଭିନ୍ନ ଯୋଜନା ନାଁ ରେ
ଚାଷି ମୂଲିଆର ଗାଁରେ
କାମ କରି କାଁ ଭାଁ ରେ
ପୂରାଇଲେ ସବୁ ଆଁ ରେ
ମିଛେ ମିଛେ ଖାଲି ହୋ ହଲ୍ଲା ଚାଲିଚି
କିଏ ବା କି ଦଣ୍ଡ ପାଉଛି
ଭାଇ, ଭଲା ରାଜନୀତି ହଉଛି
କହିଲେ କହିବ କହୁଚି ।୩ ।

ବୋଫର୍ସ କଥା ତ ଦେଖିଲେ
ୟୁରିଆ ବେପାର ଶିଖିଲେ
ଗୋ ଖାଦ୍ୟ ସ୍ୱାଦତ ଚାଖିଲେ
ଏବେ ପ୍ରତିରକ୍ଷା ଅର୍ଥ ଭକ୍ଷିଲେ
ସବୁ ଚୋର ଗୁଣ୍ଡ କେଦାର ଗ୍ଧରରେ
ଯେ ଯେତେ ପାରୁଛି ବୋହୁଚି
ଭାଇ ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୪।



ଦରଦାମ ସବୁ ବଢିଲା
ଦୁର୍ନୀତି ରେ ଦେଶ ବୁଡ଼ିଲା
ମୂଲିଆ ଭୋକରେ ସଢିଲା
ପେଟ ପାଇଁ ଗାଁ ଛାଡ଼ିଲା
ବହୁ ତଳ ହର୍ମ୍ୟ ଗଢେ କେ ସହରେ
କାର , ଚାଳିଆ ଛପର ନୋହୁଚି
ଭାଇ ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୫।



ମଧ୍ୟାହ୍ନ ଭୋଜନ ଚଳିଲା
ପାଠ ବୃକ୍ଷେ ଶୂନ ଫଳିଲା
ଶିକ୍ଷିତ ବେକାର ବୁଲିଲା
ଗୁଣ୍ଡା, ଦାଦାଗିରି ଚାଲିଲା
ଚାକିରୀଆ ପାଇଁ ରାଜ କୋଷ ଖାଲି
ମନ୍ତ୍ରୀଙ୍କ ଦରମା ବଢୁଚି
ଭାଇ ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୬।

ଦେଶର ପ୍ରଗତି ହୋଇଲା
ନାରୀ ଉଚ୍ଚ ଶିକ୍ଷା ପାଇଲା
ବବ୍‌କଟ୍ ବେଳ ଅଇଲା
ଶାଢି ପିନ୍ଧା ଆଉ ନୋହିଲା
ଅଙ୍ଗ ପ୍ରଦର୍ଶନ କରି ଆଜି ନାରୀ
ସୁନ୍ଦରୀ ମାନ୍ୟତା ପାଉଚି
ଭାଇ, ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୭।



ବୁଦ୍ଧ ମୂର୍ତ୍ତି ଭଂଗ କରିଲା
ତାଲିବାନ ଦିନ ସରିଲା
ରାକ୍ଷସ ପ୍ରବୃତ୍ତି ଧରିଲା
ଲାଡ଼େନର କାଳ ପୁରିଲା
ଆତଙ୍କ ସନ୍ତ୍ରାସବାଦୀଙ୍କୁ ପୋଷି ରଖିଛ ଯେ
ତମ ଦିନ ସରି ଯାଉଛି
ଭାଇ ଭଲା ରାଜନୀତି ହଉଚି
କହିଲେ କହିବ କହୁଚି ।୮।



# "ନାନା ବାୟା ଗୀତ" (ଲାଳିକା)




ଝୁଲରେ ହାତୀ ଝୁଲ
ଡ଼ବା କ୍ଷୀର ଖାଇ ଫୁଲ
କାନ୍ଦନା ଆଉ ଧନ ମାଳୀ ମୋର
ମା" ତୋ ଯାଇଛି ସ୍କୁଲ ।୧।

ବାଇ ଚଢେଇ ରେ ବାଇଚଢେଇ
ତୋ" ମା ଯାଇଚି ପାଠ ପଢେଇ
ଶୋଇପଡ଼ ମୋର ଧନ
ଆସିଲେ ଖାଇବୁ ସେରେଲାକ୍ ପେଟେ
(ଆଉ) ସ୍ତନରେ ନବଳା ମନ ।୨।

କୋକର ମିନାରେ କୋକର ମିନା
ଦୁଦୁ ପିଇବାକୁ କାନ୍ଦୁଚି କୁନା
କାନ ତାର କାଟି ଖା
ସ୍ତନ୍ୟ ଖୁଆଇଲେ ସୌନ୍ଦର୍ଯ୍ୟ କମିବ
ଆଧୁନିକା ତାର ମା ।୩।



ଇଟିକିଲି ମିଟିକିଲି ଫୁଲିଗଲା କାଉଁଚ
ବୋତଲ ପିଇଦେ ଧନ ମା' କ୍ଷୀର ନାଇଁତ ।୪।

ହାତୀ ଝୁଲୁଥାଏ ରଜା ବଗିଚାରେ
କିଆକନ୍ଦା ଖାଇବାକୁ
କୁନା ଝୁଲୁଥାଏ ତା ମମି କୋଳରେ
ଲାକ୍ଟୋଜିନ୍ ପିଇବାକୁ ।୫।

ଉଦୁକୁ ଦୁମା ତାଳ ଗୋଟମା
ଶୋଇ ପଡ଼ କୁନା ଆଉ କାନ୍ଦନା
ମା' ତୋ ଯାଇଛି ବୁଲି
ନଅଟା ହେଲାଣି ଏ ଯାଏ ଫେରିନି
ମୁଁ ଲଗେଇଚି ଚୁଲି ।୬।

ମେଘ ବରଷିଲା ଟୁପୁରୁ ଟୁପୁରୁ
କେଶୁର ମାଇଲା ଗଙ୍କା
ତୋ 'ମା' ଯାଇଚି ସିନେମା ଦେଖିରେ
ଶୋଇ ପଡ଼ ମୋର ରାଜା ।୭।



ଆ' ଜହ୍ନ ମାମୁଁ ଶରଗ ଶଶି
କାନ୍ଦି କାନ୍ଦି କୁନା ବସିଛି ରଷି
ମମି ଯାଇଚି ସନେମା
ନିଦ ମାଡ଼ିଲାଣି ଅଝଟ ହେଉଛି
ମାକୋଳେ ରହୁନି ଜମା ।୮।

ଧୋରେ ବାଇଆ ଧୋ
ଧୋ' ରେ ବାଇଆ ଧୋ
ବହି ପଢିବାକୁ କହି ପିଲାଙ୍କୁ ତୁ
ସ୍କୁଲ ଚେୟାରରେ ଶୋ ।୯।




ଆସ ଆସ ପାରା ଯୋଡ଼ିକ
ମୋର ପିଢ଼ାରେ ବସ
ଖାଇବାକୁ ଦେବି ତୁମକୁ
ମୁଁ ତହଲ୍‌କା ରସ ।୧୦।

ଟୁଉକୁ ମଷିରେ ଟୁଉକୁ ମୁଷି
ମଧ୍ୟାହ୍ନ ଭୋଜନ ଖାଉଥା ବସି
ଦରକାର ନାହିଁ ପାଠ
ଚାକିରୀ ନାହିଁରେ ଛଟେଇ କରିବେ
ଏବେ ତ୍ରେଣ୍ଟି ପରସେଣ୍ଟ ।୧୧।



# ନାରୀଟିଏ ମତେ କର

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ସମସ୍ତଙ୍କ ମନ ମୋହି ମୁଁ ପାରିବି
ଦିଅ ମୋତେ ଏହି ବର ।୧।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେକର
ସୁନ୍ଦର ଚେହେରା ଦିଅ ଟିକେ ଖାଲି
ପୁରୁଷ ହେବେ ଚାକର ।୨।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଟିକିଏ ହସରେ ପଦିଏ କଥାରେ
ଜିଣିବି ସର୍ବ ଅନ୍ତର ।୩।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ସବୁ କ୍ଷେତ୍ରେ ସବୁ ସୁବିଧା ମିଳିବ
ଥିଲେ ରୂପକାନ୍ତି ମୋର ।୪।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେକର,
ରାଜନୀତି ଆଉ ଚାକିରୀ କ୍ଷେତ୍ରରେ
ସ୍ଥାନ ସଂରକ୍ଷଣ ମୋର ।୫।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଚାକିରୀ କରି ମୁଁ ବାହାରେ ବୁଲିବି
ସ୍ୱାମୀ ମୋ ଜଗିବେ ଘର ।୬।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
"ବିଉଟି ପାର୍ଲରରେ କେଶ ମୁଁ କାଟିବି
(ଆଉ) ସାଜିବିନି ଗଭା ମୋର ।୭।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଆଗପଛ ଚୁଟି କାଟି ମୁଁ କରିବି
କେଶ ମୁକୁଳା ମୋହର ।୮

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଶାଢୀ ସାୟା ଛାଡ଼ି ଡ୍ରେସ୍ ମୁଁ ପିନ୍ଧିବି
ସାଜିବି ମୁଁ ଫରେନର ।୯।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ସନ୍ତାନ ପ୍ରସବି ସ୍ତନ୍ୟ ଦେବି ନାହିଁ
ଖୁଆଇବି ଡ଼ବା କ୍ଷୀର ।୧୦।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ରୋଷେଇ କରିବେ ପିଲାଙ୍କୁ ପାଳିବେ
ସ୍ୱାମୀ ଦେବତା ମୋହର ।୧୧।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଯାହା ମୁଁ କରିବି ସହିବାକୁ ବାଧ
ସ୍ୱାମୀ, ଶାଶୁ ଓ ଶ୍ୱଶୁର ।୧୨।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଗଙ୍ଗା କହୁଥିବା ଯାଏଁ ମୁଁ ନିଜର
ଗାଙ୍ଗୀ କହିଲେ ମୁଁ ପର୍ ।୧୪।







ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ବିଗାଡ଼ିଲେ ଯଉତୁକ କେସ୍ ଦେବି
ଯିବେ ସବୁ ମାମୁଁ ଘର ।୧୫।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ନାରୀ ଓ ପୁରୁଷ ନୁହେଁ ସାନବଡ଼
ସମାନ ମୋ ଅଧିକାର ।୧୬।

ନାରୀଟିଏ ମତେ କର ମହାପ୍ରଭୁ
ନାରୀଟିଏ ମତେ କର
ଏକଳି ଯୁଗରେ ପୁରୁଷ ଅପେକ୍ଷା
ନାରୀ ହେବା ଶ୍ରେୟସ୍କର ।୧୭
ଜନସୁଧା ପତ୍ରିକାରେ କଟକରୁ ପ୍ରକାଶିତ)

# ରାଧିକା ଅତୀତ ଓ ବର୍ତ୍ତମାନର

ଦ୍ୱାପର ଯୁଗର ରାଧିକା ସୁନ୍ଦରୀ
ପ୍ରେମିକ କୃଷ୍ଣର ପାଇଁ
କେତେ ଅପଯଶ, ନିନ୍ଦା ଅପବାଦ
ମଥା ପାତି ଥିଲା ସହି ସେ ରାଇ.....
କୃଷ୍ଣ ସଂଗେ ଚୋରା ପ୍ରୀତି ପାଇଁ ସେ ରାଇ..।୧।



ଗୋପ ନଗରରେ ଶାଶୁ ନଣନ୍ଦ ଓ
ଗୋପାଳ ଗୋପିକା ମାନେ
ମୁଣ୍ଡ ଟେକି ବାଟ ଚଲାଇ ନ ଦେଲେ
ଅପନିନ୍ଦା ଅପମାନେ ସେ ରାଇ
ଲାଜ ସରମରେ ଦିନନେଇ ସେ ରାଇ.....।୨।



ଆଜିର ରାଧିକା ଶିକ୍ଷିତା ଅଧିକା
ଏକାଧିକ କୃଷ୍ଣ ଲୋଡ଼େ
ଖାତିରି ନାହିଁ ତା ମାନ ଅପମାନେ
ଠିଆ ତାର ନିଜ ଗୋଡ଼େ ସେ ରାଧା
ମାନେ ନାହିଁ ସେ ବଂଧନ ବାଧା ସେ ରାଧା...।୩।

ସେ ଯୁଗର ରାଧା ପାନ ଖାଇ ନିଜ
ଓଠ କରୁଥିଲା ନାଲି
ଆଜିର ରାଧିକା ଲିପଷ୍ଟିକ୍ ଲଗାଇ
ଭାବୁଛି ସୁନ୍ଦରୀ ବୋଲି ସେ ରାଇ,
କେଉଁ କଥାକୁ ଖାତିରି ନାହିଁ ସେ ରାଇ......।୪।

ସେ ଯୁଗର ରାଧା ସାଜୁଥିଲା ଗଭା
ଛାଡୁଥିଲା ଲମ୍ବା ବେଣୀ
ଆଜିର ରାଧିକା ବବ୍‌କଟ୍ କରି
କେଶ ମୁକୁଳା କଲେଣି ସେ ରାଇ
ଭ୍ୟାନିଟ୍ ବ୍ୟାଗ୍ କାନ୍ଧରେ ଝୁଲାଇ ସେ ରାଇ... ।୫।



ଚାକିରୀ କରି ସେ ବୁଲେ ଇଛା ମତେ
କେତେ କୃଷ୍ଣ ସଂଗେମିଶେ
ଟିକିଏ ହସରେ ପଦିଏ କଥାରେ
ଆପଣାର କରି ବସେ ସେ ରାଧା
କେତେ କୃଷ୍ଣ ତା ପଣନ୍ତେ ବଂଧା ସେ ରାଧା... ।୬।

ନିତି କେତେ କୃଷ୍ଣ ଆସନ୍ତି ପାଶକୁ
ପଦେ ହସ କଥା ପାଇଁ
ଖରଚା ଦେଇ ସେ ଚରଚା ହୁଅନ୍ତି
ମନେ କେତେ ଆଶା ନେଇ ସେ କାହ୍ନୁ
ନଭୁଲନ୍ତି ରାଧିକାକୁ ମନୁ ସେ କାହ୍ନୁ........ ।୭।



ସ୍ୱାମୀ ଚନ୍ଦ୍ର ସେଣା ସବୁ ଦେଖି ଜାଣି
କିଛି ନ ଜାଣିଲା ପରି
ଚୋର ମା' ସମ ନିରବରେ କାନ୍ଦେ
ମନକଥା ମନେ ମାରି ସେ ବାବୁ
ତାକୁ ଟଙ୍କା କରିଦିଏ କାବୁ ସେ ବାବୁ..... ।୮।

କି କରିବ ଆଉ ରାଧିକା ତ ତାର
ରୋଜଗାରିଆ ଘରଣୀ
କୃଷ୍ଣମାନେ ପଛେ ଗୋଡ଼ାନ୍ତୁ ପଛରେ
ଠନ୍ ଠନ୍ ଆଣେ ଗଣି ସେ ଟଙ୍କା
ତାର ମୁହଁ କରିଦିଏ ବଙ୍କା ସେ ଟଙ୍କା...... ।୯।

ଚାକିରିଆ ରାଧା ହାତ ଧରିଛି ସେ
ସାଜିଛି ସେବୃହନ୍ନଳା
ଗୃହଧନ୍ଦା ଅଧେ କରିବାକୁ ବାଧ
ନହେଲେ ଲାଗିବ ପାଲା ସେ ଭଲା
ଅଶାନ୍ତିରେ ନିଶିଦିନ ଗଲା ସେ ଭଲା.....।୧୦।



ପିଲାଛୁଆ ସହ ଘରର ଝଂଝାଳ
କରେ ମାଇଚିଆ ସାଜି
ନିରୁପାୟ ହାୟ, ରାଧିକା ତ ସବୁ
ଅଣ୍ଡିରା ଚଣ୍ଡି ଯେ ଆଜି ସେ ରାଇ
ଖାଲି ପ୍ରେମରେ ହୁଅନ୍ତି ବାଇ ସେ ରାଇ....।୧୧।

ନାହିଁ ମାନ୍ୟ ଭକ୍ତି ଶାଶୂ ଶଶୁରଙ୍କୁ
ଦେବର ନଣନ୍ଦେ ସ୍ନେହ
ନିଜଖଲି ନିଜେ ସିଲେଇବା ଛାଡ଼ି
ଆଉସବୁ ଦୁର୍ବିସହ ସେ ରାଇ
ସୁଖସାଥୀ ସେ ଦୁଃଖର ନୋହି ସେ ରାଇ ...।୧୨



ସମକକ୍ଷ ଆମେ ପୁରୁଷ ସହିତ
ସବୁକ୍ଷେତ୍ରେ ସବୁକାମେ
ଚନ୍ଦ୍ରସେଣାଙ୍କୁ ବାଡ଼ରିବୁ କାହିଁକି
ପାଠୋଇ ରାଧିକା ଆମେ ସେ ରାଇ
ଭୟଭ୍ରାନ୍ତି ଆମ କାରେ ନାହିଁ ସେ ରାଇ.....।୧୩।

ଷଣ୍ଢା ମୋଡ଼ି ଦେଇ ମେଣ୍ଢା କରିଦେଇ
ପାରୁଶକ୍ତିବଳେ ଆମେ
କଳିଯୁଗରାଧା ନମାନିଣ ବାଧା
ଘୁରିବୁଲୁ ପ୍ରୀତିଦାନେ ସେ ଆମେ
କିମ୍ବା ଲିପ୍ତ ଥିବୁ ଗୃହକାମେ ସେ ଆମେ ...।୧୪।

ଗଦସ୍ଫୁଂଘି ଯଦି ବସ ନହୋଇବେ
ଆମଠାରେ ଚନ୍ଦ୍ରସେଣା
ଯୌତୁକ ଯାତନା କେଶ୍ ଠୁକି ଦେବୁ
ପେଲୁଥିବେ ଯାଇ ଘଣା ସେବାକୁ
ଏକାଥରେ ହୋଇ ଯିବେ କାବୁ ସେ ବାବୁ... ।୧୫।

ନାରୀଙ୍କ ଉନ୍ନତି ଦେଶର ପ୍ରଗତି
ବଦଳେ ହେଲା ଦୁର୍ଗତି
ନାରୀଙ୍କ ବିକାଶ, ଦେଶର ବିକାଶ
ପରବର୍ତ୍ତେ ଅଧୋଗତି ସେ ଦେଶ
ନୈତିକତା ହୋଇଗଲା ଶେଷ ସେ ଦେଶ.... ।୧୬।





# "କେଶବତୀ କନ୍ୟା"



ମୋ ସୁବର୍ଣ୍ଣ କଂକଣ ନେ,
ପାଣିକି ପକେଇ ଦେ,
ମୋ କର୍ଣ୍ଣର କୁଣ୍ଡଳ ନେ
ପାଣିକି ପକେଇ ଦେ,
ମୋ ଗଳ ମୋତିହାର ନେ
ପାଣିକି ପକେଇ ଦେ
ନଦୀଘାଟେ ସ୍ନାନ ରତା
ସହଚରୀ ମେଳେ,
ବାରହାତ ଦୀର୍ଘ କେଶା, ଅପରୂପା
କେଶବତୀ କନ୍ୟା ସାଧବର ।
କେତେ ଯେ, ଆକୁଳ, ଅନୁନୟ
ବିନୟ, ପ୍ରେମ ନିବେଦନ,
ସର୍ବସ୍ୱ ବିନିମୟେ !
ବିମୁଗ୍ଧ, ଆକୃଷ୍ଟ ରାଜପୁତ୍ର, ଉପେକ୍ଷିତ ।
ଆଜି କିନ୍ତୁ ଲାଞ୍ଛିତା, ଅପମାନିତା
ଯେତେ ସବୁ କଶେବତୀ କନ୍ୟା
ରାଜପୁତ୍ର ମାନେ ସବୁ ଦୁଃଶାସନ ଆଜି
ମୁକ୍ତକେଶା ପାଞ୍ଚାଳୀ ମାନେ
ସ୍ୱାଗତ କରନ୍ତି ଦୁଃଶାସନ ମାନଙ୍କୁ



ଜବାଧାରାମାନେ ଆଜି
ଲିପ୍‌ଷ୍ଟିକ୍ ରଂଜିତାଧରା ।
ଅଂଗ ପ୍ରଦର୍ଶନ ଆଉ ଅର୍ଦ୍ଧନଗ୍ନ
ପରିଛଦ ପରିଧାନ, ଆହ୍ୱାନ କରେ
ଆଜି ପାପାଚାରୀ ରାବଣ ମାନଙ୍କୁ ।
ସତୀ ସୀତା ମାନେ ଆଜି ଅପହୃତା, ଧର୍ଷିତା ।
ପାଶ୍ଚାତ୍ୟ ଢାଞ୍ଚାରେ କରି କେଶ ବିକର୍ତ୍ତନ
ଆଜି ରାଧା ମାନେ ବାଧା ବିନା ସଂପୂର୍ଣ୍ଣ ସ୍ୱାଧୀନ ।
ଚନ୍ଦ୍ରସେଣା ଆଜି ସବୁ ପରୁଷ ପୁଙ୍ଗବ
ହସ୍ତରେ କଂକଣ ଆଉ ମାଥେ ଦୀର୍ଘକେଶ
ମନ୍ତ୍ର ମୁଗ୍ଧ ସର୍ପ ସର୍ବେ ଶୁଙ୍ଘିରାଇ ଗଦ ।
ବାଜେ ନାହିଁ ବଂଶୀ ଆଜି
ଯମୁନାର କୂଳେ ଆଉ କଦମ୍ବର ମୂଳେ ।
ଉଚ୍ଚ ଶିକ୍ଷାୟତନ ସବୁ ଆଜି ଗୋପବୃନ୍ଦାବନ ।
ରାଇସବୁ ବାଇ ଖାଲି କୃଷ୍ଣପ୍ରେମ ପାଇଁ
ଅର୍ଜ୍ଜୁନ ମାନେ ସବୁ ଆଜି ବୃହନ୍ନଳା ।
ସାବିତ୍ରୀମାନେ ସବୁ ଅଟନ୍ତି ପିଙ୍ଗଳା ।



ରାବଣ ମାନେ ସାଜନ୍ତିସାଧୁ ସନ୍ଥ ଯତି
ପାଞ୍ଚାଳୀ ମାନେ ଲୋଡ଼ନ୍ତି ପାଞ୍ଚ ପାଞ୍ଚ ପତି
ଜଗତର ନାଥ ପ୍ରଭୁ ଆହେ ଜଗନ୍ନାଥ
ଦ୍ୱାପର ଲୀଳାକି କର, କଳିଯୁଗେ ଆଜି ?
କୁହ କୁହ ପ୍ରଭୁହେ କଳାଶ୍ରୀମୁଖ
ଭୀମକି ଆସିବେ ଆଉ ନାଶିବେ ଦୁଃଶାଙ୍କୁ
ଦୌପଦୀ ବାଂଧିବେ କେଶ ଦୁଃଶାଙ୍କ ରକ୍ତରେ
ଯୋଗାଇବ କୋଟି ବସ୍ତ୍ର ଅର୍ଦ୍ଧନଗ୍ନା
ଦ୍ରୌପଦୀ ମାନଙ୍କୁ ?
କେଶବତୀ କନ୍ୟା ସବୁ ସାଜିବେ କି ଗଭା ??

*ସଂଯୋଜନା* :ବିଗତ ଅତୀତରେ ସୁଦୀର୍ଘ ତଥା ସୁସଜ୍ଜିତ କେଶ ବିନ୍ୟାସ, ଭାରତୀୟ ନାରୀମାନଙ୍କର ସୌନ୍ଦର୍ଯ୍ୟର ପରିପ୍ରକାଶ ରୂପେ ପରିଗଣିତ ହେଉଥିଲା । ଆଜି କିନ୍ତୁ ପାଶ୍ଚାତ୍ୟର, ଅନୁକରଣରେ ବିକର୍ତ୍ତିତ ମୁକ୍ତ କେଶ ତଥା ଅର୍ଦ୍ଧନଗ୍ନ ପରିଛଦ ପରିଧାନ ଏବଂ ଅଂଗ ପ୍ରଦର୍ଶନ ଆଦି ସାମାଜିକ ଓ ନୈତିକ ଅଧୋଗତିର କାରଣ ପରି ମନେହୁଏ । ପରିଣାମ ସ୍ୱରୂପ ଭ୍ରଷ୍ଟାଚାର, ବ୍ୟଭିଚାର ଏବଂ ଦୁରାଚାର ବୃଦ୍ଧି ହେବାରେ ଲାଗିଛି । ଏହାର ନିରାକରଣ ତଥା ସଚେତନତା ସୃଷ୍ଟି, ଉକ୍ତ ସମାଲୋଚନା ମୂଳକ କବିତା ରଚନାର ଲକ୍ଷ୍ୟ ।



# " ତୋ ବଡ଼ ଲୋକ ତୋ ଘରେ "

ତୋ ମନରେ ନାହିଁ ଯଦି, କାହାପାଇଁ ଟିକିଏ ଦରଦ
ତୋ ବଡ଼ଲୋକି ତୋ ଘରେ,
ତୋ ଘରେ ଯେତେ ଥିଲେ କାହାକୁ ବା ଛାଇ ?
ଗଣ୍ଡା ଗଣ୍ଡା ଫ୍ୟାନ୍ ଯଦି ଘୁରୁଥାଏ, ତୋ ଘରର ତ୍ରିତାଲା ଛାତରେ
ପୁଞ୍ଜା ପୁଞ୍ଜା ବିଜୁଳି ବତୀର ଆଲୋକରେ
ଚକ୍ ଚକ୍ କରୁଥାଏ ଯଦି ତୋ ଘରର ସୁସଜ୍ଜିତ କକ୍ଷ
ସେଥିରେ ବା କାର ଯାଏ ଆସେ
ତୋ ମନରେ ନାହିଁ ଯଦି କାହାପାଇଁ ଟିକିଏ ଦରଦ
ତୋ ବଡ଼ଲୋକି ତୋ ଘରେ
ତୋ ଘରେ ଯେତେଥିଲେ କାହାକୁ ବା ଛାଇ ?...... ।୧।





ଦାମି ଦାମି ଗାଲିଚାରେ ତୁ ଯଦି ସାଜିଥାଉ-
ତୋ ଘରର ମସୃଣ ମୋଜାକି ବା ମାର୍ବଲ ଚଟାଣ
ଟିକ୍‌ଉଡ୍, ପ୍ଲାଇଉଡ୍ ଅବା ଶିଶୁ ପଲଙ୍କରେ
ତୁ ଯଦି ଶୋଉ ସଦା ତୁଳିତଳେ ମଖମଲ୍ଲୀ ବିଛଣା ସଜାଇ
ସେଥିରେ ବା କାର ଯାଏ ଆସେ ?
ତୋ ମନରେ.................... ।୨।

ଗୋଛା ଗୋଛା ଚାକର ପୂଜାରୀ ନେଇ
ତୁ ଯଦି ରାଣୀ ସାଜୁ ତୋ ପ୍ରାସାଦରେ
ନିତି ନିତି ଘିଅ, ଦୁଧ, ମାଛ, ମାଂସ, ଅଣ୍ଡା
ତୁ ଯଦି ଖାଉ ଥାଉ ବହୁ ଆଡ଼ମ୍ବରେ
ସେଥିରେ ବା କାର ପେଟ ପୁରେ ?
ତୋ ମନରେ............. ।୩।



ମେଁଚା ମେଁଚା ସୁନାର ଆଭରଣ
ତୁ ଯଦି ମୁଣ୍ଡି ହେଉ ତୋ ଦେହର ପ୍ରତି ଅଂଗେ ଅଂଗେ
ଗଦା ଗଦା ସିଂଥେଟିକ୍, ସିଲକ୍ ବା ପାଟଶାଢ଼ୀ ପିନ୍ଧି
ତୁ ଯଦି ସାଜୁ ତୋର ନିତି ନୂଆ ବେଶ
ସେଥିରେ ବା କାର ଯାଏ ଆସେ ?
ତୋ ମନରେ................ ।୪।
ଲିପ୍‌ଷ୍ଟିକ୍ ଓଠେ ବୋଲି ହାପ୍ ବ୍ଲାଉଜ ପିନ୍ଧି
କବରୀ ସଜାଇ ଚିତ୍ର ତାରକା ରୀତିରେ
ଭ୍ୟାନିଟ୍ ବ୍ୟାଗ୍ ହାତେ ଧରି ଅର୍ଦ୍ଧନଗ୍ନ ବେଶେ
ଫିଆଟ ପ୍ରିମିୟର କିମ୍ବା ଷ୍ଟାଣ୍ଡାର୍ଡ଼ କାରରେ
ତୁ ଯଦି ଘୁରିବୁଲୁ ଦେଖାଇବା ପାଇଁ ଗର୍ବେ ତୋ ରୂପ ପସରା
ସେଥିରେ ବା କାର ଯାଏ ଆସେ ?
ତୋ ମନରେ.................. ।୫।
ଏ ଦୁନିଆଁ ଘୁରିବୁଲେ ଦିନ,ଦଣ୍ଡ, ମାସ, ବର୍ଷ ନେଇ
ବଦଳି ବଦଳି ଯାଏ ସବୁକିଛି
ଏ ମଣିଷ ମନ ବି ବଦଳେ
ତୁ ଯଦି ବଦଳିଛୁ ହୋଇ ବଡ଼ଲୋକ,
କାହିଁକି ଦେଖେଇ ହେବୁ ଅନ୍ୟ ଆଗେ
ତୋ ବଡ଼ଲୋକି ? ସେଥିରେ ବା କିଏ ଖୁସିହେବ ?
ତୋ ମନରେ ନାହିଁ ଯଦି କାହାପାଇଁ ଟିକିଏ ଦରଦ
ତୋ ବଡ଼ଲୋକି ତୋ ଘରେ
ତୋ ଘରେ ଯେତେ ଥିଲେ କାହାକୁ ବା ଛାଇ ???........... ।୬।





ବି.ଦ୍ର : ଜଣେ ନିକଟ ସଂପର୍କୀୟ ଉଚ୍ଚ ପଦାଧିକାରୀ ସରକାରୀ କର୍ମଚାରୀଙ୍କ ପତ୍ନୀଙ୍କର ବଡ଼ଲୋକୀ ମନୋବୃତ୍ତିକୁ ସମାଲୋଚନା କରି ଉକ୍ତ କବିତା ରଚିତ ୧୯୯୭-୯୮ରେ ।

# ସେ ଏକ ରୂପସୀ ଆଧୁନିକା

ତା ଦେହର ଅଗନରେ ଫୁଟି ଉଠେ କନକର ଚଂପା
ତା ମୁଖର ନଭୋଦେଶେ ନୃତ୍ୟକରେ, ନିତ୍ୟ ହୋମ ପ୍ରଭା ।
ତା ଅଧର ଲିପ୍‌ଷ୍ଟିକ୍ ରଂଜିତ, ସୁଶୋଭିତ ଅତି
ତା ମଥାର କେଶଦାମ ସୁସଜ୍ଜିତ ନବରଂଗେ ନିତି ।
ତା ହସରେ ଝରିପଡ଼େ ସ୍ୱର୍ଗର ଅମୃତ
ତା କଥାରେ ସୃଷ୍ଟିହୁଏ ପୁଷ୍ପପାରିଜାତ ।
ତା ଚାଲିରେ ଫୁଟିଉଠେ ମରାଳର ଠାଣି
ତା ନିତଂବ ଚୁମ୍ବେ ସଦା କାକ କୃଷ୍ଣ ବେଣୀ ।
ତା ଆଖିର ଚାହାଣୀରେ ଅନେକ ସପନ
ତା ମନର ବୀଣା ତାରେ ଅନେକ କଂପନ ।
ତା ରୂପର ମାଧୁରୀରେ ଆକର୍ଷିତ ବହୁ ଯୁବାମନ
ତା ଚତୁପାର୍ଶ୍ୱେ ଘୁରିବୁଲେ କେତେ ଯେ ନୟନ ।
ତା ବେଶ ଓ ପରିପାଟୀ ଆଧୁନିକ ତା ରଂଗ ଢଂଗ
ତା ଶାଢୀ ବ୍ଲାଉଜ୍ ଫାଙ୍କେ ଝଂକିମାରେ ତା ମାଂସାଳ ଅଂଗ
ତା ମନେ ସେ ରଂଭା ଅବା ମେନକା ଅପସରା
ତା ନେଇ ଦେଖେଇ ହୁଏ ତା ରୂପ ପସରା ।





(ସଂଯୋଜନ- ଆଜି ସମାଜରେ ଅପସଂସ୍କୃତିର ତୀବ୍ରତା ଫଳରେ ନାରୀ ନିର୍ଯାତନା ନାରୀ ଧର୍ଷଣ, ଯୌତୁକ ନିର୍ଯ୍ୟାତନା ଆଦିର ବହୁଳତା ପରିଲକ୍ଷିତ । ପାଶ୍ଚାତ୍ୟର ଅନୁକରଣରେ ନାରୀ ଜାତିର ପ୍ରସାଧନ, ଅଂଗସଜା, ପରିପାଟୀ, ଏବଂ ଆଧୁନିକ ପରିଚ୍ଛଦ ପରିଧାନ, ତଥା ଚଳଚିତ୍ରର ଅନୁକରଣରେ ନାରୀମାନଙ୍କର ଅଂଗ ପ୍ରଦର୍ଶନ ଆଦି, ଯୁବ ସମାଜର ବିପଥଗାମୀ ର କାରଣ ପରି ମନେହୁଏ । ତେଣୁ ତାର ବିଲୋପ ସାଧନ ତଥା ସଂସ୍କାର ପାଇଁ ଉକ୍ତ ସମାଲୋଚନା ମୂଳକକବିତା 'ସେ ଏକ ରୂପସୀ ଆଧୁନିକା' ରଚିତ ୧୯୭୦ରେ

# ଉଲଗ୍ନ ଦ୍ରୌପଦୀ

ମୁକୁଳିତ କେଶା ଯାଜ୍ଞିସେନୀ
ବାନ୍ଧିଥିଲେ ବେଣୀ ଦିନେ
ଦୁଃଶାସନ ରକ୍ତେ
ଯେଦିନ ଉପାଡ଼ି ଭୁଜ
ଦେଲେ ଉପହାର
ଦ୍ୱିତୀୟ ପାଣ୍ଡବ ।
ଆଜି କିନ୍ତୁ !
ପ୍ରୟୋଜନ ନାହିଁ ଆଉ
ବେଣୀ ବନ୍ଧନର
ନିତମ୍ବ ଚୁମ୍ବିତ କାଳ କୃଷ୍ଣ ବେଣୀ
ବିକର୍ତ୍ତିତ ଆଜି ।
ଯାଜ୍ଞସେନୀ ସବୁ ଆଜି
ମୁକୁଳିତ କେଶା ।
ସ୍ୱେଚ୍ଛାକୃତ ନଗ୍ନ ଅଙ୍ଗ ପ୍ରଦର୍ଶନେ
ତତ୍ପର ଆଜି ଦ୍ରୌପଦୀ ସକଳ ।





"ସଂପୂର୍ଣ୍ଣ ଉଲଗ୍ନ"
ଯାହା ନପାରିଲା ଦୁଃଶା ।
ସଂଭବ ତା ହୁଏ ଆଜି
ପାଞ୍ଚାଳୀ ମାନଙ୍କର ସ୍ୱ ପ୍ରବୃତ୍ତିରେ ।
ହେ କୃଷ୍ଣ !
ଅତୀଷ୍ଟ ହୁଅନ୍ତି ଆଜି
କର୍ଣ୍ଣ, ଦ୍ରୋଣ, ପିତାମହ ଭୀଷ୍ମସମ
ବୟୋଜ୍ୟେଷ୍ଠ ବୃଦ୍ଧ ।
ଆବୃତ କରିଦିଅ ଦେଇ କୋଟିବସ୍ତ୍ର
ଆଜିର ଏ ଦ୍ରୋପଦୀ ମାନଙ୍କର
ନଗ୍ନ ଅଂଗ ସବୁ ।
ନ ଦେଖନ୍ତୁ ସେ ବିଭତ୍ସ ଦୃଶ୍ୟ ଆଉ
ସନାତନ ଧର୍ମ ପ୍ରାଣ ଦେଶବାସୀ ମୋର ।
ନ ହେଉ ପୁନରାବୃତ୍ତି ପୁଣି ସେଇ
ମାନବିକତା ବିହୀନ ଆଦିମ ପଶୁ ପ୍ରବୃତ୍ତିର ।।



# ସୂର୍ପଣଖା

ସମୟର ନଈ ଘାଟେ, ଦେଖାଦେଲା
ରାଜ ଜେମା ସୂର୍ପଣଖା ଦିନେ
ଅପରୂପ ସୌନ୍ଦର୍ଯ୍ୟର ଥିଲା ଏକ
ମୂର୍ତ୍ତିମନ୍ତ କମନୀୟ ପ୍ରତିମା ସେ
କାମଦେବ ସଂଗେ ରତି ଦେବୀ ଭଳି
ଯୋଡ଼ିଟିଏ ଠିକ୍ ସାଜିବ ଭାବି
ଆନନ୍ଦରେ ହୋଇ ଆତ୍ମହରା
ବିନା ବାଛ ବିଚାର ରେ, ରାମ
ଯୋଡ଼ି ଦେଲେ ଯୁବରାଜ
ଲକ୍ଷ୍ମଣ ସହିତ ।
କିନ୍ତୁ ହାୟ ! ସେ ଥିଲା ଏକ
ବିଷଧର କାଳ ସର୍ପିଣୀ



ଫଁକରି ଚୋଟ ମାରେ
ଛାଇ କାର ପଡ଼ିଲେ ତା ପରେ ।
ବାହାର ସୁନ୍ଦର ସିନା ମହାକାଳ ଫଳ
ଭିତରଟା ଖାଲି ତାର
ଦରପୋଡ଼ା ଅଲୋଡ଼ା ଅଙ୍ଗାର ।
ଦୁନିଆଁର ଯେତେ ସବୁ
ବାହାର ଚିକ୍କଣ ଆଉ
ଦେଖଣ ସୁନ୍ଦର ସୁନାର ହରିଣୀ
ରାଜ ଜେମା ସୂର୍ପଣଖା ଭଳି ସର୍ବେ
ଏକ ଏକ ବିଷଧର କାଳ ନାଗୁଣୀ ।।





# ଆସ ବଂଧୁ ସାହିତ୍ୟ କରିବା



ଆସ ବନ୍ଧୁ ସାହିତ୍ୟ କରିବା
ଅନୁଷ୍ଠାନ ଟିଏ ନାମମାତ୍ର ଗଢି
ତମେ, ମୁଁ ସଭାପତି ସଂପାଦକ ହବା
ପତ୍ରିକା ବା ସଂକଳନଟିଏ ପ୍ରକାଶ କରିବା
ନବପ୍ରତିଭାଙ୍କୁ ପ୍ରୋତ୍ସାହନ ଦେବାନାଁରେ
କବିତା ପାଇଁ ଶହେ ଓ ଗଳ୍ପ ପାଇଁ
ଦୁଇଶହ ସହଯୋଗ ନେବା ।
ସଂପାଦନା ମଣ୍ଡଳୀରେ ନାଁ ରହିଲେ ତିନିଶ,
ଓ ଆଜୀବନ ସଭ୍ୟ ହେଲେ, ଚାରିଶହ ନେବା ।
ଯିଏ ଯାହା ଲେଖି ପଠାଇବେ, ବିନା ବାଛ ବିଚାରେ
ଟଙ୍କା ନେଇ ସବୁ ଛାପି ଦେବା ।
ଟେଷ୍ଟ ପେପର ଭଳି,
ଏକ ବିରାଟ ସଂକଳନ କରିବା
କେହି ପ୍ରଶଂସା ନକଲେ ବି
ନିଜେ ନିଜେ ବାହାଦୁରି ନେବା ।




ପ୍ରତିଭାବାନ୍ କବିଙ୍କୁ ସମ୍ବର୍ଦ୍ଧନା ଦେବା
"ମାନପତ୍ର" ପାଇଁ ଦୁଇଶହ ଓ
"ପଦବୀ" ପାଇଁ ପାଞ୍ଚଶହ ନେବା ।।
ଅନ୍ୟଙ୍କୁ ପ୍ରତିଷ୍ଠିତ କରିବା ନାଁରେ,
ଆମେ ନିଜେ ପ୍ରତିଷ୍ଠିତ ହେବା ।
ବିକଳିଆ ଲେଖକଙ୍କୁ ଭୁଆଁ ବୁଲେଇ
ଭାଷା ସାହିତ୍ୟର ଉନ୍ନତି ନାଁ ରେ
ରୀତିମତ ବେପାର କରିବା ।।
ଭଲ ଦୁଇ ପଇସା ରୋଜଗାର କରିବା
ଆସବଂଧୁ ସାହିତ୍ୟ କରିବା
ଅନୁଷ୍ଠାନଟିଏ ନାମମାତ୍ର ଗଢି
ତମେ ମୁଁ ସଭାପତି ସଂପାଦକ ହବା ।।

❑

# ନେତାଙ୍କ ନିର୍ବାଚନ ଇସ୍ତାହାର



ହେ, ମୋର ଭଉଣୀ ଭାଇ
ଭୋଟ୍ ଦେଇ ମୋତେ ଦିଅ ଜିତାଇ
ହେ ଭୋଟର ଭାଇ
ସବୁ ସୁବିଧା କରିବି ମୁହିଁ ହେ.... ।୧।

ରାସ୍ତା ଅବା କୋଠଘର,
ଇସ୍କୁଲ, ଡାକ୍ତର ଖାନା ଆବର
ହେ ଭୋଟର ଭାଇ
କହ, କିସ ତୁମ ଦରକାର ହେ.....।୨।

ଇନ୍ଦିରା ଆବାସ ଘର,
ନଳକୂଅ ଅବା ଭଡା କାହାର
ହେ ଭୋଟର ଭାଇ
ସବୁହବ, କଲେ କାରବାର ହେ ।୩।

ଯଦି ମୁଁ ଭୋଟ୍ ପାଇବି
ବିଧାନ ସଭାରେ ମନ୍ତିରୀ ହେବି
ହେ ଭୋଟର ଭାଇ,
ତୁମ, ଇଛା ପୁରଣ କରିବି ହେ....।୪।



ଶୁଣ ମୋର ଇସ୍ତାହାର
ଯେଉଁଥି ପାଇଁ ମୁଁ ହେବି ତତ୍ପର
ହେ ଭୋଟର ଭାଇ
ଏହା, ଦୃଢ ପ୍ରତିଶୃତି ମୋର ହେ...।୫।

ଚାମଚ ମାନେ ମୋହରି
ଚତୁଃପାର୍ଶ୍ୱେ ମୋର ଥିବେଟି ଘେରି
ହେ ଭୋଟର ଭାଇ
ମୋତେ, ବେଢି କରୁଥିବେ ହୁରିହେ ।୬।

ଦିବସେ ହବ ଗହଳି
ଯେତେ ଯାର ସବୁ ଅଳି ଅର୍ଦ୍ଦଳି
ହେ ଭୋଟର ଭାଇ
ସବୁ, ହିଁ ମାରି ଦେବି ଟାଳି ହେ.... ।୭।

ଦଳ ପତିଙ୍କର କଥା
କରିବି ନାହିଁ ମୁଁ କେବେ ଅନ୍ୟଥା
ହେ ଭୋଟର ଭାଇ
କଲେ, ହେବିସିନା ହଟହଟା ହେ.... ।୮।

ମୁଖ୍ୟମନ୍ତ୍ରୀଙ୍କ ସୁଗୁଣ
ସଭା ସମିତିରେ କରି ବଖାଣ
ହେ ଭୋଟର ଭାଇ
ମୋର, ଆସନ କରିବି ଟାଣହେ ।୯।



ମୋ ନିର୍ବାଚନ ମଣ୍ଡଳି
ପାଇଁ ମୁଁ ଲଢିବି କରି ଗୁରାଳି
ହେ ଭୋଟର ଭାଇ
ଯେତେ, ଅର୍ଥ ଆଣିବି ଅଣ୍ଡାଳି ହେ.... ।୧୦।



ଯେତେ ଯେତେ କାମ ହେବ
"ରାଧେ, ରାଧେ" କରି ପୂରଣ ହେବ
ହେ ଭୋଟର ଭାଇ
ଯାର, ପରସେଣ୍ଟ ସିଏ ପାଇବହେ..... ।୧୧।

ଯେତେ ଖାଉ ଅଫିସର
ପୋଲିସ୍, ଫରେଷ୍ଟ, ଅବା ଡାକ୍ତର
ହେ ଭୋଟର ଭାଇ
କୋଟା ବିନା, ହେବେ ହରବର ହେ.. ।୧୨।

ଯନ୍ତ୍ରୀ, ଆଇ, ଏ.ଏସ୍. ଆଦି
ଅର୍ଥ ଦେଲେ ନଟଳିବ କା ଗାଦୀ,
ହେ ଭୋଟର ଭାଇ,
ନଚେତ୍, ଭିଜିଲାନ୍ସ ନବ ବାନ୍ଧିହେ...... ।୧୩।



ଯେତେ ବଡ଼ ଅଫିସର
ଯିଏ ନ ମାନିବ ବୋଲ ମୋହର
ହେ ଭୋଟର ଭାଇ,
ତାଙ୍କୁ କରିବି ମୁଁ ଟ୍ରାନ୍ସଫର ହେ........ ।୧୪।




ଅର୍ଥ ଯିଏ ଦେବ ଜାଣ
ବଦଳି ଆଦେଶ କ୍ୟାନ୍ ସେଲ୍‌ପୁଣ
ହେ ଭୋଟର ଭାଇ,
କିମ୍ବା ହବସିଏ ହଇରାଣ ହେ........ ।୧୫।

ଏତିକି ମୋ ନିବେଦନ
ଜିତାଇଲେ ମୋତେ ଏ ନିର୍ବାଚନ
ହେ ଭୋଟର ଭାଇ
ପ୍ରତିଶୃତି କରିବି ପୁରଣ ହେ ..... ।୧୬।

# ଆସ ରାଜନୀତି ବେପାର କରିବା

ହେଉନାହିଁ ଯାହା ଦ୍ୱାରା ଅନ୍ୟ କିଛି ବୃତ୍ତି
ଆସଭାଇ ଆଦରିବା ଆମେ 'ରାଜନୀତି' ।
ଅଧମ ଉଦ୍ଧାରଣ ପନ୍ଥା ଏ ଅଟଇ
ଲହଡ଼ିଗଣିଲେ ଏଠି ଅର୍ଥ ଯେ ମିଳଇ ।
ବାଗେଇ ଚୁନେଇ ଖାଲି କଥାକୁ କହିବା
ଯେ ଯାହା କହିଲେ ସବୁ ହଁ ମାରିଦେବା ।
ଗାନ୍ଧି, ଗୋପବନ୍ଧୁ, ଆଉ ନେହେରୁଙ୍କ କଥା
ଉପଲକ୍ଷ ଦେବା ସଦା ନ କରି ଅନ୍ୟଥା ।
ଟାଉଟରି, ଗୁଣ୍ଡାଗିରି, ଯୁଆଚୋରି ଆଦି
ଅଭ୍ୟାସ କରିବା ସବୁ ପିନ୍ଧି ଗାନ୍ଧୀ ଖଦୀ ।
ପତି, ପତ୍ନୀ, ପିତା, ପୁତ୍ର କରି ରାଜନୀତି
ମନ୍ତ୍ରୀ, ବିଧାୟକ ହେବା ନିର୍ବାଚନ ଜିତି ।
"ରଜା ପୁଅ ରଜା" ଭଳି ଆମରି ବଂଶରେ
ରାଜନୀତି କରୁଥିବା ଜଣେ ଜଣ ପରେ ।





ଶାସନ ଗାଦିକୁ ଆମେ ଧରିବା ଜାବୁଡ଼ି
"ବାପାର ସଂପତ୍ତି" ଭଳି ଦେବା ନାହିଁ ଛାଡ଼ି ।
ଲୋକଙ୍କ ସୁବିଧା ସବୁ ଭାଷଣରେ କରି
ନିଜ ସୁବିଧା କରିବା ଦେଶଧନ ମାରି ।
ଯେଉଁ ଦଳ ପାଇଲେ ବି ଶାସନ ସୁବିଧା
ହେବନାହିଁ କିଛି କେବେ ଆମ ଅସୁବିଧା ।
ବାହାରକୁ ସିନା ଆମେ ଅଟୁ ନାନା ଦଳ
ଭିତରେ ଦେଶ ସଂପତ୍ତି ଲୁଟିବାରେ ମେଳ ।
ଥରେ ମନ୍ତ୍ରୀ, ବିଧାୟକ, ସାଂସଦ ହୋଇଲେ
ସପ୍ତପୁରୁଷକୁ ଧନ ସଂଚିଦେବା ହେଲେ ।
ଅତି ଉତ୍ତମ ବେପାର ଏହି "ରାଜନୀତି"
ପାଞ୍ଚବର୍ଷରେ ହୋଇବା ଆମେ କୋଟିପତି ।
ଚଉଦ ପୁରୁଷ ପାଇଁ ସଂଚିଦେବା ଧନ
ମଉଜ କରିବେ ପୁତ୍ର, ନାତି ଚିର ଦିନ ।
ଧନମାନ ଯଶ କୀର୍ତ୍ତି ସବୁ ଅରଜିବା
ଆସ ଭାଇ "ରାଜନୀତି" ବେପାର କରିବା ।



# "ପ୍ରଭୁ ଥରେ ମତେ ମନ୍ତ୍ରୀ କର"

ଆହେ ଦୟାମୟ ବିଶ୍ୱବିହାରୀ
ଥରେ ମନ୍ତ୍ରୀକର, କରେ ଗୁହାରି ।
ତୁମ ଚରଣରେ ମୋର ଭକତି
ଦିଅ ସାହସ କରିବି ଦୁର୍ନୀତି ।୧।
ଦୁଃଖୀ ଅରକ୍ଷିତ ସେବା କାରଣେ
ବଳଦିଅ କହିବାକୁ ଭାଷଣେ
ଜଳସ୍ଥଳ ବନଗିରୀ ଆକାଶ
ହେଉ ପଛେ ମୋ ଦୁର୍ନୀତି ପ୍ରକାଶ ।୨।
ସତ କହିବାକୁ କିଆଁ ଡ଼ରିବି
ଯେତେ ପାରେ ମୁଁ ପକେଟ ଭରିବି
ଦେଶ ସେବା ପାଇଁ ପ୍ରାଣ କାନ୍ଦୁଛି
ଥରେ ଚାନ୍ସ ଦିଅ ପାଦ ବନ୍ଦୁଛି ।୩।
ନିର୍ବାଚନ ବେଳେ ଗ୍ରାମେ ବୁଲିବି
ଚିକ୍କଣିଆ କଥା ଖାଲି କହିବି
ଭୋଟ୍‌ପାଇ ମୁଁ ମନ୍ତ୍ରୀ ହେବା ପରେ
କିଏ ମାରିବ ହାତ ମୋ ଲାଞ୍ଚରେ ।୪।
କିଛି ବେକାର ଯୁବକ ପାଖରେ
ରଖି ଚାକିରୀ ଦେବାର ନାଁ ରେ
ବୁଲା କୁକୁରଙ୍କୁ ରୁଟି ଅଇଁଠା
ଦେଇ ପରେ ମୁଁ ମାରିବି ଗୋଇଠା ।୫।



ଯେତେ ଗୁଣ୍ଡାଗିରି ତାଙ୍କ ବଳରେ
ହେବ ସଭା ଓ ସମିତି କାଳରେ
ଖାଲିଯିନ୍ଦାବାଦ୍ କରି କରିକା
କାର୍ଯ୍ୟ କାଳ ଯିବ ସରି ସରିକା ।୬।
ଶେଷେ ସେମାନଙ୍କୁ ବୁଦୁ ବନାଇଁ
ବିଦାକରି ଦେବି ମନ ମନାଇଁ
ନିର୍ବାଚନ ମଣ୍ଡଳୀର ଉନ୍ନତି
ପାଇଁ ଲଢିବି ମୁଁ ପ୍ରାଣ ମୋ ପାତି ।୭।
ଯାହା ଆର୍ଥିକ ସଂବଳ ଆସିବ
ପଣି ପାଇ ମୋ ସଂସାର ହସିବ
ରାଜଧାନୀ ଓ ବିଭିନ୍ନ ସହରେ
ତୋଳାଇବି ମୁଁ ମହଲ ବାହାରେ ।୮।
ବସ୍‌କାର୍ ଯେତେଯାହା କରିବି
ସାତ ପୁରୁଷକୁ ଧନ ସଂଚିବି
କୋଇଁ, ଶାଳକ, ମୋ ପୁଅ ପୁତୁରା
ପାଇବେ ଚାକିରୀ ହୋଇ ତକରା ।୯।
ନାମ ମାତ୍ର ଉଦ୍ଘାଟନ କରିବି
ମୋଟା ପାଉଣା ପକେଟେ ଭରିବି
କର୍ମଚାରୀଙ୍କୁ କରିବି ବଦଲୀ
ପୁଞ୍ଜିପାଇ ଭାଗ୍ୟଯିବ ବଦଳି ।୧୦।
ମୋତେ ଏତିକି ଶିଖାଅ ସାଇଁ ହେ
ମୋର ଆଉ କିଛି ଲୋଡ଼ା ନାହିଁ ହେ ।୧୧।



# ସାବଧାନ କବି ସାବଧାନ

ସାବଧାନ କବି ସାବଧାନ
ସାହିତ୍ୟ ନାଁରେ ଶୋଷଣ ପାଇଁକି
(ଦଳେ) ବ୍ୟବସାୟୀ ଆଜି ଧାବମାନ
ସାବଧାନ କବି ସାବଧାନ ।୧।

ସଂସଦଟିଏ ଗଢ଼ିଦେଇ
ନିଜେ ସଂପାଦକ ପଦନେଇ
ସହଯୋଗ ଦେୟ ମାଗିଯେ କରନ୍ତି
ପତ୍ରିକା ଆଉ ସଂକଳନ
(ତାଙ୍କୁ) ସାବଧାନ କବି ସାବଧାନ ।୨।

ସାହିତ୍ୟ ବେପାରେ ଭଲ ଲାଭ
ନବପ୍ରତିଭାଙ୍କୁ ଯୋଗ ଯୋଗ
କଲେ ଦି ପଇସା ଭଲ ରୋଜଗାର
ଲୋଡ଼ାନାହିଁ କିଛି ମୂଳଧନ
ସାବଧାନ କବି ସାବଧାନ ।୩।




ବିଛାଇ ଅଛନ୍ତି ଜାଲ ଯିଏ
ବଡ଼ଉଁଶ ମରା ତାହୁକ ସିଏ
ସେ ଜାଲେ ପଡ଼ିଲେ ଧନହାନି ସଂଗେ
ପ୍ରାଣପୀଡ଼ା ହେବା ସାର ଜାଣ
ସାବଧାନ କବି ସାବଧାନ ।୪।

ଯେତେ ମୋଟା ହୁଏ ସଂକଳନ
ସେତେ ଚଳୁ ହୁଏ ତୁମଧନ
ସାହିତ୍ୟିକ ନାମେ ନିଜର ଡିଣ୍ଡିମ
ନିଜେ ଯେ ପିଟନ୍ତି ତାଙ୍କୁ ଚିହ୍ନ
ସାବଧାନ କବି ସାବଧାନ ।୫।



କବିତା ଅନେକେ ମାଗିନେଇ
ସହଯୋଗ ଦେୟ ଠକିଦେଇ
ଚିଠିଦେଲେ ଆଉ ଉତ୍ତର ନ ମିଳେ
ନିରବ ରହନ୍ତି ଖାଇ ଧନ
(ତାଙ୍କୁ) ସାବଧାନ କବି ସାବଧାନ ।୬।

ପଦପଦବୀ ଓ ମାନ ପତ୍ର
ଅର୍ଥ ଆଦାୟରଅଟେ କ୍ଷେତ୍ର
ଖର୍ଚ୍ଚକଲେ କିଛି ମିଳିଯାଏ ସବୁ
ହୁଏନି ସଠିକ୍ ମୂଲ୍ୟାଙ୍କନ
ସାବଧାନ କବି ସାବଧାନ ।୭।



ଯାହାଇଚ୍ଛା ତାହା ଲେଖି ଦେଲେ
ଟଙ୍କା ଦେଇ ତାହା ଛାପିଦେଲେ
ମିଳେନାହିଁ କେବେ କବିର ମାନ୍ୟତା
ବଢେ ନାହିଁ କେବେ ସମ୍ମାନ
ସାବଧାନ କବି ସାବଧାନ ।୮।

ସାଧନା ରଖିଲେ ଅବ୍ୟାହତ
ସିଦ୍ଧିମିଳିବହିଁ ସୁନିଶ୍ଚିତ
ଆବଶ୍ୟକ ସଦା ଲେଖନୀ ଚାଳନା
ଆବଶ୍ୟକ ସଦା ଅଧ୍ୟୟନ
ସାବଧାନ କବି ସାବଧାନ ।୯।



କବି କବୟିତ୍ରୀ ଅନୁରୋଧ
ମୋ କଥାକୁ କର ହୃଦବୋଧ
ଝିଣ୍ଟିକାକୁ ମାରି ବଣି ପୋଷିବାରେ
ଶ୍ରାଦ୍ଧ କର ନାହିଁ ନିଜ ଧନ
ସାବଧାନ କବି ସାବଧାନ ।୧୦।



# କବିଟିଏ ମୁଁ କବିଟିଏ




କବିଟିଏ ମୁଁ କବିଟିଏ
ମନେ ମନେ ଶ୍ରେଷ୍ଠ କବିଟିଏ
ମୋ କବିତା ମୋତେ ବହୁତ ସୁନ୍ଦର
ମନକୁ ପାଏନି କବିତା ଅନ୍ୟର
ଆଉ କବି ସବୁ ଗ୍ରହପୁଞ୍ଜ ହେଲେ
ମୁଁ ସେମାନଙ୍କ ମଧ୍ୟେ ରବିଟିଏ ।୧ ।
କବିଟିଏ ମୁଁ...................।।

ପଢେ କିଛି କିଛି ବହିପତ୍ର
ଭଲ ଶବ୍ଦ ଯଦି ଦେଖେ ନେତ୍ର
ସଙ୍ଗେ ସଙ୍ଗେ ତାହା ଟିପିରଖି
ନିଜ କବିତାରେ ଦିଏ ଯୋଖୀ
ଚୋରିକରି ଆଣି ଅନ୍ୟ ଭାବଭାଷା
ମୋର ବୋଲି ବାହାଦୂରି ନିଏ ।୨।
କବିଟିଏ ମୁଁ.....................।।

ଏଣୁ ତେଣୁ କିଛି ଲେଖି ଦେଇ
"ଉନ୍ନତ ମାନର" ଭାବେ ମୁହିଁ
ନଥାଉ ପଛକେ ଭାବଭାଷା
ହୁଏ ପଛେ ପରେ ଲୋକହସା
କବି ବୋଲି ନିଜେ ଦେଖେଇ ହେବାକୁ
ଯାହାପାରେ ତାହା ଲେଖିଦିଏ ।୩।
କବିଟିଏ ମୁଁ...................।।

ପତ୍ରିକା କଲେ ମୁଁ ସଂପାଦନ
ମୁହଁ ଦେଖିକରେ ନିର୍ବାଚନ
ଯାହା ହେଉ ପଛେ କବିତାର ମାନ
ପଦବୀ ଧାରୀଙ୍କୁ ଦିଏ ମୁଁ ସମ୍ମାନ
ତେଲିଆମୁଣ୍ଡରେ ତେଲ ବୋଳିବା ମୋ
ଜୀବନର ଅଟେ ହବିଟିଏ ।୪।
କବିଟିଏ ମୁଁ.......................।।

ବଡ଼କଥା ନୁହେଁ କବି ହେବା
ବଡ଼ ନୁହେଁ କିଛି ଲେଖିଦେବା
ପାଠକ ହୃଦୟ ନ ଛୁଇଁଲେ
କବିତା ସେ ନୁହେଁ କେବେ ହେଲେ
ମନେରଖି ଏହା ଲେଖିବି କବିତା
ହେବି ମୁଁ ପ୍ରସିଦ୍ଧ କବିଟିଏ ।୫।
କବିଟିଏ ମୁଁ କବିଟିଏ



# ପ୍ରେମିକ କବି

ମହାକାଳ ଫଳ ପରି ମୁଁ ସୁନ୍ଦର
ଭିତର ପୋଡ଼ା ଅଙ୍ଗାର
କବି, ସାହିତ୍ୟିକ, ସଂପାଦକ ସାଜି
କରେ ପ୍ରେମ କାରବାର ।୧।
ପ୍ରେମ କରିବାରେ ହତାଶ ହୋଇ ମୁଁ
ପ୍ରେମ କବିତା ଲେଖୁଛି
ପ୍ରେମିକା ନାଁରେ ପତ୍ରିକା କରି ମୁଁ
ଓରିମାନା ମେଣ୍ଟାଉଛି ।୨।
ପ୍ରେମ ବ୍ୟତିରେକେ ଆନ ବିଷୟରେ
ଲେଖି ମୁଁ ପାରେନା କିଛି,
ବ୍ୟର୍ଥ ପ୍ରେମିକ ମୁଁ, ବୃଦ୍ଧ ବୟସରେ
(ଖାଲି) ପ୍ରେମ କବିତା ଲେଖୁଛି ।୩।
ଯେତେ ଯେତେ ଧନ୍ଦା କଲି ଜୀବନରେ,
ସବୁଠି ମାଇଲି ଫେଲ
ବିରାଡ଼ି ବେକରେ ବାନ୍ଧିଲି ଶେଷରେ
ସଂପାଦକ ସାଜି ବେଲ୍ ।୪।
ନାଁ କରିବାକୁ ସହଜ ଉପାୟ
ସଂପାଦକ ଟିଏ ହୁଅ
ଯେ ଲେଖିଲା ଯାହା, ଟଙ୍କା ନେଇ ତାହା
ପତ୍ରିକାରେ ଛାପିଦିଅ ।୫।
ସେମାନେ ବି ଖୁସ୍ ମୁଁ ବିତ ଖୁସ୍
ପକେଟ ବି ହେଲା ଖୁସ୍
ବାନ୍ତି ହେବା ସାର, କମଳା ବଦଳେ
ପିଇଲେ କାଣ୍ଡିଆ ଜୁସ୍ ।୬।



ସୁନ୍ଦରୀ ତରୁଣୀ ଦେଖି ପତ୍ରିକାର
ସହସଂପାଦିକା କରେ
କବିଙ୍କ ଅପେକ୍ଷା କବୟିତ୍ରୀ ଲେଖା
ପତ୍ରିକାରେ ବେଶୀଭରେ ।୭।
ପ୍ରେମ କଥା କହି, ବାହାଦୂରୀ ନିଏ
ସାଂଗ ସାଥୀଙ୍କ ଆଗରେ
ସତେ ବା ଯେମିତି ପ୍ରେମକେ ଜାଣିନି
ଏକାକୀ ମୁଁ ପ୍ରେମ କରେ ।୮।
ମୋ ଲେଖା କବିତା ମତେ ହିଁ ସୁନ୍ଦର
ପଢନ୍ତିନି କେବେ କେହି
ଏଣୁ ତେଣୁ ଲେଖି ଦାଦା ବଟି ମାଗି
ଛପାଇ ଦିଏ ମୁଁ ବହି ।୯।
ବହି ଛପାଇ ମୁଁ ଖୁସାମତ କରି
ସମୀକ୍ଷା କରାଇ ଦିଏ
ଉନ୍ନତ ମାନର କହିଲେଖା ମୋର
ନିଜେ ବାହାଦୁରି ନିଏ ।୧୦।
ଅନ୍ୟର କବିତା ଭଲ ନୁହେଁ ବୋଲି
ସମାଲୋଚନା ମୁଁ କରେ
ଚାଲୁଣି ହୋଇ ମୁଁ "କଣାଟାଏ ଅଛି"
କହେ ଛୁଞ୍ଚିର ପଛରେ ।୧୧।
ବୁଲାଷଣ୍ଢ ପରି ବୁଲୁଥାଏ ସଦା
କବିତା ଖାତା ମୋ ଧରି
ଯାହାକୁ ଦେଖେ ମୁଁ କବିତା ଶୁଣାଇ
ନିଏ ନିଜ ବହାଦୁରି ।୧୨।



# ଭଦ୍ରେଶ୍ୱର ଯୁଆଯଜ୍ଞ

ମାଘଶେଷ ଶୀତଥାଏ ଅଳପ ଅଳପ
ବୀର ଭଦ୍ରେଶ୍ୱର ପୀଠେ ଯଜ୍ଞ ହୁଏ ନବ ଦିନ ବ୍ୟାପୀ
ଅଗ୍ନ୍ୟୁତ୍ସବ ପରେ ଯଜ୍ଞ ଖୁବ୍ ମଜା ଲାଗେ
ଯଜ୍ଞ କୁଣ୍ଡେ ଯୂଆ ଘୃତ ହୁଅଇ ଆହୂତି ।୧।



ଅନେକ ଦୋକାନ ଆଉ ଅନେକ ବି ଜନ ସମାଗମ
ସଂକୀର୍ଣ୍ଣ ରାସ୍ତାରେ ହୁଏ ଭିଡ଼ଭାରି ଯୁବ ଯୁବତୀ
କିଏ କାରେ ଆଖିଠାରେ କିଏ କାର ଅଂଗ ସ୍ପର୍ଶ ଇଛେ
ଏମିତିକା ହୁଏ କେତେ ଛଡ଼ାଛଡ଼ି ପୁଣି ଭେଟା ଭେଟି ।୨।

କିଏ କାର ପିଛା ଧରେ ପୁଣି ଯାଏ ଛାଡ଼ି
କ୍ଳାନ୍ତ ଲାଗେ ବୁଲି ବୁଲି ତଥାପି ବି ମନ ମରେ ନାହିଁ
ମନୋହାରୀ ଚୂଡ଼ି ଆଉ ବ୍ଲାଉଜ ଓ ଶାଢୀ
ଦୋକାନରେ ମୂଲଚାଲ ହୁଏ ଖାଲି ପ୍ରହସନ ପାଇଁ ।୩।



ବିକା କିଣା ମଉଜ ଓ ମଜଲିସି ପାଇଁ
ନିତି ନିତି ହୁଏ ଯାତ୍ରା ହୁଏ ଯୁଆଖେଳ
ଆଲୋକ ଦେଖି ପତଙ୍ଗ ମଲାପରି ଡେଇଁ
ଯୁଆ, ଲଟରି ଖେଳନ୍ତି ହତ ଭାଗା ଦଳ ।୪।

ଭୋଳା ମହାଦେବ ଏଠି ନିରବ ନିଷ୍ପନ୍ଦ
ଯୁଆଡ଼ିଙ୍କ ପ୍ରାଦୁର୍ଭାବ ଯେଣୁ ଏଠି ବେଶି
ଯଜ୍ଞ ଯୁଆ ହୁଏ ଏଠି ନିଦ୍ୱନ୍ଦରେ ସଦା
କେ କହେ ଦେବତା ଏବେ ମର୍ତ୍ତ୍ୟ ରେ ବି ଅଛି ।୫।



ଯୁଆ ଲାଗି ଯଜ୍ଞ ହୁଏ ଯଜ୍ଞ ଲାଗି ଯୁଆ
ପୋଲିସ୍ ବିଭାଗ ଆସିଯାଏ ହୋଇଖୁସି
ନିତିଦିନ କଥା ଏତ ନୁହେଁ କିଛି ନୂଆ
ଦୁର୍ନୀତି ଦୁର୍ନୀତି କିଏ କେତେ ହୁଏ ଘୋଷି ।୬।

ରବିବାର ଗୁରୁବାର ଭଦ୍ରେଶ୍ୱର ହାଟ
ଗୋପାଳ ପୁର ଗ୍ରାମ ପଞ୍ଚାୟତ ନାମ
ନିୟମିତ ଚାଲେ ସଦା ସେଠି ଯୁଆ ନାଟ
କେତେ କିଏ କାନ୍ଦେ ବସି ଯା କରମ ବାମ ।୭।





ମିଶ୍ର ପୁଅ ଜଣେ ସେଠି ଯୁଆଡ଼ି ମାଫିଆ
ଉଚ୍ଚବର୍ଣ୍ଣେ ଜନ୍ମଲଭି କରେ ନିଚକର୍ମ
ଗଞ୍ଜେଇ, ଅଫିମ, ସହ ବ୍ୟବସାୟ ଯୁଆ
ଭୁଲି ସବୁ ପାପ ପୂଣ୍ୟ ଧର୍ମ ଓ ଅଧର୍ମ ।୮।

ହେ ଦୁର୍ନୀତି ନିବାରଣ ବି ଭାଗ ଦେବତା
ଥରେ ଭଲା କର୍ଣ୍ଣ ଡେରି ଶୁଣ ଏଇ କଥା ।୯।







ମାହାଙ୍ଗା ଥାନା ଅନ୍ତର୍ଗତ କୁଆଁପାଳ ବ୍ଲକର ଗୋପାଳ ପୁର ଗ୍ରାମପଞ୍ଚାୟତ ନିକଟ "ନାହାଙ୍ଗ" ଗ୍ରାମ ପଞ୍ଚାୟତରେ ଲେଖକ ୧୯୫୮ରୁ ୧୯୬୬ ପର୍ଯ୍ୟନ୍ତ ସରକାରୀ ଚାକିରୀରେ କର୍ତ୍ତବ୍ୟରତ ଥିଲେ । "ଭଦ୍ରେଶ୍ୱର" ଗୋପାଳ ପୁର ଗ୍ରା.ପ.ର ଏକ ପ୍ରାଚୀନ ଶୈବପୀଠ ବିଶେଷ ।ପ୍ରତିବର୍ଷ ନବଦିନ ବ୍ୟାପୀ ଯଜ୍ଞାନୁଷ୍ଠାନ ଏବଂ ଅପେରା ମାଘପୂର୍ଣ୍ଣିମା ସମୟରେ ଜୁଆଖେଳ ଲବ୍ଧ ଅର୍ଥରେ ପରିଚାଳିତ ହୁଏ । ଅନୀତି ଉପାୟରେ ଲବ୍ଧ ଅର୍ଥରେ ପବିତ୍ର ଯଜ୍ଞାନୁଷ୍ଠାନ ହେଉଥିବାରୁ ଭଦ୍ରେଶ୍ୱର "ସୂର୍ଯ୍ୟଯଜ୍ଞ" ଲେଖକଙ୍କର ବିଦ୍ରୋହୀ ଲେଖନୀର ସୃଷ୍ଟି ୧୯୬୬ରେ ।

# ଗାଈ ସବୁ ହେଲେ ଷଣ୍ଢ

ବଦଳିଲା ଦେଶ ଦୁନିଆଁ
ଗାଈ ହୋଇଲେ ଷଣ୍ଢ
ଷଣ୍ଢ ସବୁ ହେଲେ ବଳଦ
ନାଗ ହୋଇଲେ ଧଣ୍ଡ ।୧।

ବୁଲନ୍ତି ବଳଦ ଏଣେ ଓ
ତେଣେ କାମନ କରି
ଗାଈମାନେ ହଳ କରନ୍ତି
କ୍ଷୀର ଦେବା ପାସୋରି ।୨।

ବାଛୁରୀକୁ ଛାଡ଼ି ଗୁହାଳେ
ଗାଈ ବାହାରେ ବୁଲେ
ମାକ୍ଷୀର ଛାଡ଼ି ବାଛୁରି
ଅନ୍ୟ କ୍ଷୀର ଖାଇଲେ ।୩।

ଗୁହାଳେ ନରହି ବୁଲନ୍ତି
ଗାଈ ନିଜ ଇଛାରେ
ମନେ ମନେ ଷଣ୍ଢ ଭାବନ୍ତି
ନିଜକୁ ଏ ଯୁଗରେ ।୪।

ଓଲିଆ ଖାଆନ୍ତି ବୁଝିକି
ଚେହେରାକୁ ଦେଖାଇ
ଘରଷଣ୍ଢ ଆଜି ମନକୁ
ଆଉ ଆସନ୍ତି ନାହିଁ ।୫।

ବେକାରିଆ ଷଣ୍ଢ ବୁଲନ୍ତି
କେତେ ଖୋଜନ୍ତି ଗାଈ
ଓଲେଇ ଗାଈଏ ହାବୁଡ଼େ
ତାଙ୍କ ପଡ଼ନ୍ତି ଯାଇ ।୬।

ଶଙ୍କର ଗାଈଙ୍କ ଚେହେରା
ଦେଖି ହୋଇ ଉଛନ
ଗୋଡ଼ାନ୍ତି ସେ ଷଣ୍ଢ କରନ୍ତି
ପୁଣି ଗଣ ଧର୍ଷଣ ।୭।

ଧର୍ଷିତା ଗାଈର ଚିତ୍କାର
ଆଜି ଶୁଣୁଛି କିଏ ?
ନିର୍ଯାତନା ପାଇଁ ନିଜର
ଦାୟୀ ନିଜେ ହିଁ ସିଏ ।୮।

ଦୋଷ ନୁହେଁ ଖାଲି ଷଣ୍ଢର
ଦେଷୀ ଅଟନ୍ତି ଗାଈ
ଷଣ୍ଢ ବେଲି ଯେଣୁ ନିଜକୁ
ଆଜି ଭାବନ୍ତି ସେହି ।୯।

ଛୁଅଁ ଯଦି ସ୍ଥିର ନରହେ
ସୁତାଗଳେ କି କେବେ
ଧର୍ଷଣ କଷଣ ନାଁଆରେ
ମିଛେ ଡିଣ୍ଡିମ ବାଜେ ।୧୦।

# ନିର୍ମଳ ଭାବମୂର୍ତ୍ତି

ଆହେ ନୀଳ ଶଇଳ, ପ୍ରବଳ ମତ୍ତ ବାରଣ
ମୋ ବିରୋଧି ନେତାଙ୍କୁ ଅଚିରେ କର ଦଳନ, ଆହେନୀଳ..........
ପ୍ରତି ନିର୍ବାଚନେ ମନ୍ତ୍ରୀ ହେଉଥିବି ମୁହିଁ
ସଂଚୁଥିବି କଳାଧନ ଟ୍ରେଜେରି ପୂରାଇ ।



ଦିଅ ମୋତେ ଏକ ଭଲ ବିଭାଗ ଦାୟିତ୍ୱ
ମାରିବି ଯେଉଁଠି କୋଟି କୋଟି ମୁଁ ନିଷ୍ଚିତ
ଚଉଦ ପୁରୁଷ ବସି ଖାଇଲେ ଯେପରି
ନସରିବ ସେ ସୁବିଧା ଦିଅ ଆହେ ହରି

ତୁମକୁ ମୁଁ ଚିନ୍ତା କରେ ଥାଇ ଘୋର ଦୁଃଖେଣ
ଚକ୍ରପେସି ଶତୃ ମୋର ନାଶିବେଟି ଆପଣ
ବିରୋଧି ଦଳର ନେତା ବଡ଼ଦୁଷ୍ଟ ଦାରୁଣ
ତା ଦାଉରୁ ରକ୍ଷା ମୋତେ କର ନାରାୟଣ



ରାଜନୀତି କରି ତବ ପାଦେ ଗଲି ଶରଣ
ଶରଣ ସମ୍ଭାଳି ମନ୍ତ୍ରୀ କରି ମୋତେ ଆପଣ
ନିର୍ବାଚନ ବେଳେ ଶୁଣି, ନିତି ମୋର ଭାଷଣ
ଲକ୍ଷାଧିକ ଭୋଟ୍‌ରେ ମୋତେ, ଜିତାଇବେ ଆପଣ ।

ହାରିଗଲେ ଲୋକ ଲଜ୍ଜା, ଅମାନତ ଉଡ଼ିବ,
ବୁଲି ବୁଲି ରଡ଼ି ରଡ଼ି ଧଡ଼ି ମୋର ଛିଡ଼ିବ ।
କରିବନି ପ୍ରଭୁ ମୋତେ, ଏତେ ଲୋକହସା
ଜିତିଲେ କରିବି ଭୋଗ କଦଳୀ ଚୂଡ଼ା ଘସା ।

ଭୋଗରାଗଖଞ୍ଜଦେବି, ପାଟ, ଛିଟ ଶାଢୀ
ଦୟାକର, ଖାଲି ବସେ, ମୁଁ ଆସନ ମାଡ଼ି ।।
ଆହେ ନୀଳ ଶଇଳ..................



# "କୃତଘ୍ନ"



ପରକୁ ଆପଣା କରିବାକୁ ଭାବି
ହାତ ବଢାଇଲି ଯାରେ
ସ୍ୱାର୍ଥପର ସାଜି ତଣ୍ଟି ସେ କାଟିଲା
ବିଶ୍ୱାସ ନାହିଁ କାହାରେ ।୧।

ନିଜର ଭାବି ମୁଁ ଯାହାପାଇଁ କଲି
ଧନ ଓ ଜୀବନ କ୍ଷୟ
ବେଇମାନ ସାଜି ନିଜେ ସେ ଗାଇଲା
ତା ନିଜ ସ୍ୱାର୍ଥର ଜୟ ।୨।

ପଶୁବି ଜଣାଏ କୃତଜ୍ଞତା ଯଦି
ଖାଏ କିଛି ମଣିଷର
ଅତି ଅକୃତଜ୍ଞ ଆଜିର ମଣିଷ
ଭୁଲିଯାଏ ଉପକାର ।୩।

ପ୍ରତିଭା ନିଜର ନଥିଲେ ବି କିଛି
ଦେଖେଇ ହୁଏ ଅଧିକ
ପାସଙ୍ଗରେ କେହି ପକାନ୍ତିନି ତେଣୁ
ଜାଣିବା ଶୁଣିବା ଲୋକ ।୪।




ପ୍ରିୟ କଥା କହି ପଟାଏ ମାରିବା
ଅଟେ ସେମାନଙ୍କ କାମ
ସ୍ୱାର୍ଥସିଦ୍ଧି ହେଲାପରେ ଦେଇଥାନ୍ତି
ଆଛା କରି ଗୋଟେ ନାମ ।୫।

ରାଣ୍ଡିଙ୍କ ପରିସେ ଭାଣ୍ଡିଆ କରନ୍ତି
ଅନ୍ୟର ମହତ ସାରି
ଅଲାଜୁକ ପଣେ ଗୋଡ଼ାନ୍ତି ପଛରେ
ଗୋଇଠା ଯେ ଥାଏ ମାରି ।୬।

ଧିକ ଧିକ ତାଙ୍କ ଅତି ଅବିବେକ
ପଣ ଅତିହୀନିମାନ
କୃତିତ୍ୱ ନଥାଇ ପତ୍ନୀକୁ ଭେଟାଇ
ପାଆନ୍ତି ଆମ୍ ସମ୍ମାନ ।୭।

ଏଡ଼ିକି କୃତଘ୍ନ ଜାଣି ମୁଁ ନଥିଲି
ମଣିଷ ଥାଆନ୍ତି ବୋଲି
'ଜଳ' ଭାବି ଧାଇଁ ମରିଚୀକା ପଛେ
ପାଇଲି ମୁଁ ମରୁବାଲି ।୮।



# ମଣିଷ ଓ ଅମଣିଷ

ସବୁପ୍ରାଣୀ ସୃଷ୍ଟିକରି ସାରି ଶେଷେ
ମଣିଷ ସୃଷ୍ଟି କଲେ
ବୁଦ୍ଧି,ଜ୍ଞାନ, ତାର ହୃଦୟରେ ଦେଖି
"ଇଶ୍ୱର" ସନ୍ତୋଷ ହେଲେ ।୧।

ସୃଷ୍ଟି ସର୍ଜନା ସଂପର୍କରେ ଜ୍ଞାନ
ଥିବାରୁ ଏକା ମଣିଷ
ଶ୍ରେଷ୍ଠ ପ୍ରାଣୀ ଭାବେ ସବୁଜୀବ ମଧ୍ୟେ
ହୋଇଛି ପରିଗଣିତ ।୨।

ଜ୍ଞାନୀ ହୋଇ ଆଜି ଅଜ୍ଞାନ ସାଜିଛି
ସୃଷ୍ଟି କରିବାକୁ ନାଶ
ମହାପ୍ରଳୟକୁ ସ୍ୱାଗତ କରୁଛି
ନିମିଷେ ହେବକୁ ଧ୍ୱଂସ ।୩।

ସୃଷ୍ଟି, ସ୍ଥିତି, ଲୟ, ସବୁର କାରଣ
ଅଟନ୍ତି ଏକା ଇଶ୍ୱର,
ଅହଂକାରେ ଅଂଧ ହୋଇ ଅମଣିଷ
ସବୁଛି କର୍ତ୍ତା ବିଶ୍ୱର ।୪।

ଶାନ୍ତିରେ ରହନ୍ତୁ ନିର୍ଭୟେ ସରବେ
ବେଦକହେ ଏଇ କଥା
ଅଶାନ୍ତି ହିଁ ସୃଷ୍ଟି କରେ ଅମଣିଷ
ମଣିଷରେ ଦିଏ ବ୍ୟଥା ।୫।

ସ୍ୱାର୍ଥରେ ଜଡ଼ିତ ହୁଏ ଅମଣିଷ
ମଣିଷ ନିଃସ୍ୱାର୍ଥ ପର
ରାମ, କୃଷ୍ଣ, ବୁଦ୍ଧ, ଯିଶୁ, ମହମ୍ମଦ
ଦୃଷ୍ଟାନ୍ତ ଏ ପୃଥିବୀର ।୬।

ପରମାଣୁ ଅସ୍ତ୍ର ଗଢି ଅମଣିଷ
ଚାହେଁ ବଡ଼ ହେବାପାଇଁ
ନଷ୍ଟ କର ସର୍ବେ ଧ୍ୱଂସକାରୀ ଅସ୍ତ୍ର
ଚାହେଁ ଏ ଭାରତଭୂଇଁ ।୭।

ସମସ୍ତ ମଣିଷ ଇଶ୍ୱର ସନ୍ତାନ
ଇଶ୍ୱର ଆମର ପିତା
ସବୁ ଦେଶ ବାସୀ ଗୋଟିଏ କୁଟୁମ୍ବ
ପୃଥିବୀ ଆମର ମାତା ।୮।

ଭାଇ ଭାଇ ପରି ଚଳିବା ସମସ୍ତେ
ହିଂସା ଦ୍ୱେଷ ପରିହରି
ଭୁଲିଯିବା ସାନ, ବଡ଼ ଭେଦ ଭାବ
ପରସ୍ପରେ ସ୍ନେହ କରି ।୯।

ସ୍ୱର୍ଗ ପାଲଟିବ ପୃଥିବୀ ଆମର
ବିରାଜିବ ସୁଖଶାନ୍ତି
ସାରାଦୁନିଆଁରେ ସମସ୍ତେ ସମାନ
ମଣିଷ ଗୋଟିଏ ଜାତି ।୧୦।



# "ପରାଙ୍ଗ ପୁଷ୍ଟ"

ଆଶ୍ଚର୍ଯ୍ୟ ଲାଗେ ଦୁନିଆଁଟା ସତେ
କେତେ ଯେ ବଦଳି ଗଲା
ସ୍ୱାର୍ଥ ଆଉ ଅର୍ଥ ପାଇଁ କି ମଣିଷ
ବିବେକ ହରାଇ ଦେଲା ।୧।

ବିଷ କୁମ୍ଭ ମୁଖେ ଅମୃତ ସମ
ଚିକଣିଆ କଥା କହି
ନିଜେ ବଡ଼ ବୋଲି ଡିଣ୍ଡିମ ପିଟନ୍ତି
ମିଛେ କରନ୍ତି ବଡ଼ାଇ ।୨।

ବାହାରକୁ ଖାଲି ଦେଖାଇ ହୁଅନ୍ତି
ଭଦ୍ର, ଜ୍ଞାନୀ, ଗୁଣୀ ଆମେ
ଅନ୍ତରଟା ଭରା ସ୍ୱାର୍ଥ ପରତାରେ
ସଂପୂର୍ଣ୍ଣ ଓଲଟା କାମେ ।୩।

ନିଜର ନଥାଏ ସାମରଥ କିଛି
ଉପରକୁ ଉଠିବାକୁ
ଚେଷ୍ଟା ସେ କରନ୍ତି ଅନ୍ୟକୁ ନିଶୁଣି
କରି ମୁଣ୍ଡ ଟେକିବାକୁ ।।୪

ଯେତେ ସବୁ ରାଜା ମହାରାଜା ପଦ
ନିଅନ୍ତି ନିଜେ ଆବୋରି
ନିଜ ମୁଣ୍ଡେ ନିଜେ ମୁକୁଟ ପିନ୍ଧନ୍ତି
ନିଜକୁ ବଡ଼ ବିଚାରି ।୫।



ନିଜେ ବଡ଼ ବୋଲି କହିଲେ କି କିଏ
ପସନ୍ଦ କରିବେ କେବେ
ଧରାପଡ଼ି ଯିବେ ଘରାଙ୍ଗ ପୁଷ୍ଟ ଯେ
ସମୟ ଆସିବ ଯେବେ ।୬।

ନିଜର ସାମର୍ଥ୍ୟ ନଥାଇ ଯେ କରେ
ଅନ୍ୟକୁ ଅନୁସରଣ
ସେ କି କେବେ ଲାଭ କରିବ ପ୍ରତିଷ୍ଠା
(ଖାଲି) ଜଗତେ ହସିବେ ଜନ ।୭।

କାମ କରେ ଜଣେ ପରିଶ୍ରମ କରି
ନାଁ ନିଏ ଅନ୍ୟଜଣେ
ପୁଅଟିଏ ଜଣେ କରିଦେଲା ପରେ
କାଖ କରେ ଆଉଜଣେ ।୮।

ସ୍ୱାର୍ଥ ପାଇଁ ଯିଏ ଅନ୍ୟକୁ ମାଧମ
କରି କୃତିତ୍ୱ ଦେଖାନ୍ତି
ସଇତାନ ଆଉ ବେଇମାନ କ'ଣ
ଗଛରେ କେବେ ଫଳନ୍ତି ।୯।



# ପ୍ରତାରକ

ମଣିଷ ଭିତରେ ଅମଣିଷ କିଛି
ଥାଆନ୍ତି ସର୍ବତ୍ର ସଦା
ମୁଖରେ ଅମୃତ ପେଟେ ହଳାହଳ
କରନ୍ତି ସ୍ୱାର୍ଥ ସଉଦା ।୧।

ନିଜ ସ୍ୱାର୍ଥ ପାଇଁ ବଂଧୁ ବୋଲି କହି
ଅତିଆପଣାର ପରି
ହସି ହସି କଥା କହନ୍ତି ଚିକ୍କଣ
ବହୁ ତୋଷାମଦ କରି ।୨।

ଜାଲ ବିଛାଇ ସେ ରାବନ୍ତି ବଉଁଶ
ମରା ଡାହୁକଙ୍କ ପରି
ନିଜେ ବଂଚି ଅନ୍ୟମାନଙ୍କୁ ଜାଲରେ
ପକାଇ ଦେବାକୁ ମାରି ।୩।

ବୁଝି ପାରନ୍ତିନି ନିଜ ଜୀବନଟା
ରହିଛି ବ୍ୟାଧ ହାତରେ
କାକ ସମମୈଳା ଭକ୍ଷଣ କରନ୍ତି
ଅତିଚତୁର ପଣରେ ।୪।

ଦେଖେଇ ହୁଅନ୍ତି ସତେ ଯେ ଯେମିତି
କରୁଛନ୍ତି ବଡ଼କାମ
ସ୍ୱାର୍ଥକଲେ ମୂଳ ଅର୍ଥକଲେ ଠୁଳ
ମିଳେ କି କେବେ ସୁନାମ ।୫।

ବନିସି କଣ୍ଟାରେ କରାଣ୍ଡି ପକାଇ
ଶେଉଳ ଧରିବା ପାଇଁ
ଭୂଆଁ ସେ ବୁଲାନ୍ତି ନୂଆ ନୂଆ କେତେ
ନବ ପ୍ରତିଭାଙ୍କୁ ନେଇ ।୬।

ଆଲୋକ ଦେଖିଣ ପତଙ୍ଗ ସଦୃଶ
ଅନେକ ଯାଆନ୍ତି ଧାଇଁ
ସିଦ୍ଧିସିନା ଥାଏ ସାଧନା ପଥରେ
ମିଛରେ ହୁଅନ୍ତି ବାଇ ।୭।

ବଂଧୁ କହି ପ୍ରତାରଣା ଯେ କରନ୍ତି
ଅଟନ୍ତି ସେ ବେଇମାନ
ତାଙ୍କ ଠାରୁ ବଳି ଦୁନିଆଁରେ ଆଉ
ନାହାନ୍ତି କେ ସଇତାନ ।୮।

ଭାଷା ସାହିତ୍ୟର ଉନ୍ନତି ନାଆଁରେ
ସାଜି ଦୁଳାମୁହାଁ କାଙ୍କ
ବୁଡ଼ି ବୁଡ଼ି ପାଣି ପିଅନ୍ତି ଯେମାନେ
ଅଟନ୍ତି ସେ ପ୍ରତାରକ ।୯।



# ଶିକାରୀ



ଅଭାବ ନାହିଁ ଆଜିକାର ଦୁନିଆଁରେ
ଚଢେଇ ମାନଙ୍କର
କେତେ ଆସନ୍ତି
କେତେ ଯେ ଯାଆନ୍ତି
କିଏ ବା ରଖୁଛି ହିସାବ ତାର।
ବହୁତ ହୁସିଆର ଆଜିକାର
ଚଢେଇମାନେ, ତଥାପି-
ଶିକାରୀର ଜାଲରେ ପଡ଼ିଯାନ୍ତି ଅନେକେ ବେଳେ ବେଳେ ।
ଅଜାଣନ୍ତରେ କି ଜାଣନ୍ତରେ
ତା ସେମାନେ ହିଁ ଜାଣନ୍ତି
କିନ୍ତୁ ବଂଶମରା ଡାହୁକ ସାଜି
ବଂଚିବାକୁତ ଚାହେଁନା କେହି



ଜାଲ ଛିଣ୍ଡାଇ ତେଣୁ-
ଛୁ, ମାରନ୍ତି ଅନେକ ସମୟରେ
କିନ୍ତୁ, ଜାଲ ବିଛାଇ, ଚଢେଇ ଧରିବା ଯେ,
ଏକମାତ୍ର ବ୍ୟବସାୟ ଶିକାରୀର ।
ଖାଲି ଟିକିଏ ଦୁଃଖ ଲାଗେ ଯାହା
ଥରେ ପରଶ୍ରମ କରି ଧରିଥିବା
ଚଢେଇଟି ହାତରୁ ଖସିଗଲେ ସିନା ?
ହେଲେ, ପକ୍କା ଶିକାରୀ ଯିଏ
ଚଢେଇ ତାକୁ ସବୁବେଳେ ମିଳିବେ ନିଶ୍ଚୟ
ତେଣୁ ଧନ୍ୟ ସେ ଶିକାରୀ
ଧନ୍ୟତାର ଚଢେଇ ଧରା ବେପାର
ଆଉ ମାନିବାକୁ ପଡ଼ିବ
ତାର ଶିକାରୀ ପଣିଆକୁ ବି ।



# ବୁଲା କୁକୁର



ଖାଇବାକୁ ଗଣ୍ଡେ ଯେଉଁଠି ମିଳିଲା
ଚାଲିଯାଇ ରହିଯାନ୍ତି, ସେଇଠି ସେମାନେ
ସହରରୁ ମଫସଲ, ମଫସଲରୁ ସହର
ବୁଲି ବୁଲି ଅଇଁଠା ଖିଲି ଚାଟିବା
ପ୍ରକୃତି ସେମାନଙ୍କର ।
ସ୍ୱଜାତି କେହି ଆସିଲେ ପାଶକୁ ।
ବାଧା କାଳେ ଉପୁଜିବ ନିଜର ସ୍ୱାର୍ଥରେ
କୁଣ୍ଠା ବୋଧ କରନ୍ତିନି ତେଣୁ
ଘଉଡ଼ାଇ ଦେବାକୁ ଶାର୍ଦ୍ଦୁଳ ପଣରେ
ବଳୁଆ କୁକୁରଟିଏ କିନ୍ତୁ
ଦେଖିବା ମାତ୍ରକେ
ଲାଙ୍ଗୁଳ ଜାକି, ଦାନ୍ତ ନିକୁଟେଇ
ପଶନ୍ତି ଶରଣ ତା ପାଶେ, ଶୃଗାଳ ସାଜି
ଭଲକରି କାମୁଡ଼ାଟେ ଦେଉପଛେ ସିଏ ।
ନିମକ ହାରାମ ବିଶ୍ୱାସ ଘାତକ ଏମାନେ ।



ନିଜତ୍ୱ କିଛି ନଥାଏ ଏମାନଙ୍କର
ଗୁରୁତ୍ୱ ଦିଅନ୍ତି ସଦା ନିଜର ସ୍ୱାର୍ଥକୁ ।
ସ୍ୱାର୍ଥପାଇଁ ସବୁକିଛି କରନ୍ତି ଏମାନେ
ଦେଖି ସହି ପାରନ୍ତିନି ଅନ୍ୟସୁଖ ଶିରୀ ।
ଦବେଇ ଦେଇ ଅନ୍ୟକୁ
ସବୁଯାକ ଅଇଁଠା ଖଲିଚାଟି
ନିଜ ପେଟ ଭରିବାକୁ ଚେଷ୍ଟିତ ସର୍ବଦା
ଅତି ଅବିଶ୍ୱାସୀ ମାରାତ୍ମକ ପ୍ରାଣୀ ।
ବିଶ୍ୱାସ ଯେ କଲା ଏମାନଙ୍କୁ
କାମୁଡ଼ାସେ ଖାଇବ ନିଶ୍ଚୟ ।
ସତର୍କତା ଅବଲମ୍ବନ କରି
ଦୂରେଇ ନରହିଲେ ଏମାନଙ୍କ ଠାରୁ
ପଦେ ପଦେ ବିପଦ ସୁନିଶ୍ଚିତ ।



# "ଆଉ କାନ୍ଦ ନାହିଁ ବିଭୀଷଣ"



ହଳାହଳ ବିଷେ ଭରିଦେଲ କୁମ୍ଭ
ମୁଖରେ ଅମୃତ ଦେଇ
ରାବଣ ମୃତ୍ୟୁରେ ବିଭୀଷଣ ଆଉ
କାନ୍ଦନାହିଁ କାନ୍ଦନାହିଁ ।୧।
ଚେର ତା କାଟିଲ ରାମ ସଂଗେ ମିଶି
କରିଲ ତା ସର୍ବନାଶ
କୁମ୍ଭୀର କାନ୍ଦଣା କାନ୍ଦୁଅଛ ଏବେ
ଆଉ ବା କରିବ କିସ ? ।୨।
ମରିଗଲାପରେ ଭାଇ ଭାଇ ବୋଲି
ଯେତେ ଛିଣ୍ଡାଇଲେ ଆଣ୍ଟୁ
ଜଗତେ କେବଳ ହସିବେଟି ଜନେ
"ଆହା" ନ ସ୍ଫୁରିବ କଣ୍ଠୁ ।୩।
ଉପର ଦେଖାରେ ଭକ୍ତି ଭାବ ଆଉ
ବ୍ୟଥିତ ବିବ୍ରତ ପ୍ରାଣ
ମହାକାଳ ଫଳ ପରି ଭିତରଟା
ମିଛେ ହୁଅ ମ୍ରିୟମାଣ ।୪।
କରିଅଛ ଯେଉଁ କରମ ତୁମେ ହେ
ଯାଇଅଛ ଯେଉଁ ପଥେ
ଅସନ୍ତୋଷ ଆଉ ଅଭିଶାପ ଫଳ
ବହିବ ନିଶ୍ଚୟ ମାଥେ ।୫।

ବଂଶ ନାଶ କରା ତାହୁକର ସମ
ସୁନ୍ଦର ତୁମର ଗୁଣ
ଧିକ୍ ତୁମ ବୁଦ୍ଧି ଧିକ୍ ତୁମ ଜ୍ଞାନ
ଧିକ୍ ବଡ଼ଲୋକୀ ପଣ ।୬।
ଭାଇର ପ୍ରତିଭା, ଭାଇର ପ୍ରଶଂସା
ଅସହ୍ୟ ତୁମର ହେଲା
ନିଜର ଗୌରବ ଅଭିବୃଦ୍ଧି ପାଇଁ
କଲ ତୁମେ କେତେ ପାଲା ।୭।
ଆପଣାର ହସ୍ତେ ଜିହ୍ୱା ଛେଦି କିଂପା
ଦେଉଛ ଅନ୍ୟର ଦୋଷ
ନିଜ ଅସ୍ତ୍ର ତୁମ ଫେରିଯିବ ହୋଇ
ବୁମେରାଂ ତୁମପାଶ।
ସମ୍ମାନ ଯଦି ପାଇବାକୁ ଚାହଁ
ଦିଅ ଅନ୍ୟ ରେ ସମ୍ମାନ
ତେବେ ସିନା ତୁମେ ଦୁନିଆ ଆଗରେ
ହୋଇପାରିବ ମହାନ ।୯।



# ରୂପଶ୍ରୀ

ସୌନ୍ଦର୍ଯ୍ୟ ଓ ରୂପଶ୍ରୀ
ଅତୁଳନୀୟ ଅବଦାନ
ଭଗବାନଙ୍କର
ନମନୀୟ, କମନୀୟ, ଗୋଲାପର
ରୂପ ଲାବଣ୍ୟରେ
ଆକର୍ଷିତ ନ ହୁଏ ବା କିଏ ?
ଉପଭୋଗ କରିବାର
ଅଦମ୍ୟ ଲାଳସା
ଉଙ୍କିମାରେ ସବୁରି ମନରେ ।
ସୁଯୋଗର ଅଧିକାରି
ହୁଏ ଭାଗ୍ୟବାନ ।
ଦୁର୍ଭାଗ୍ୟ ବି ଥାଏ ପାଶେ ପାଶେ
କଂଟାରେ ତା' ବିଦ୍ଧ ହୁଏ ହସ୍ତର ଆଙ୍ଗୁଳି
ଯନ୍ତ୍ରଣାହୁଏ ଚୟନ ସମୟେ
ଆଉ ରୂପସୀ ନାରୀର
ରୂପଶ୍ରୀରେ ବଚଳିତ
ନହୁଏ ବା କିଏ ?
ଅପହୃତା ହୁଅନ୍ତି ସତୀ ସୀତା
ଉପଭୋଗ କରନ୍ତି ପାଞ୍ଚପାଣ୍ଡବ
ପାଞ୍ଚାଳୀଙ୍କୁ - ଉଲଗ୍ନ ବି
କରନ୍ତି ଦୁଃଶାସନ ସର୍ବସମକ୍ଷରେ
ଧର୍ଷିତା ହୁଅନ୍ତି ବିଶ୍ୱସୁନ୍ଦରୀ ଲିନର
ଆବାରଗିଲ ହସ୍ତପଦ ବଂଧନାବସ୍ଥାରେ
ଆଉ ଅନେକ ବିବାହିତା ରୂପସୀ
ଲିପ୍ତ ରହନ୍ତି ପରକୀୟା ପ୍ରୀତିରେ
ହେୟଜ୍ଞାନ କରି ନିଜ ପୁରୁଷକୁ
ଅହଂଭାବ ବହି ରୂପଶ୍ରୀରେ ନିଜର
ଆପଣାର କରି ପର ପୁରୁଷକୁ
ଦଂଶନ କରନ୍ତି ନିଜ ପୁରୁଷକୁ
ନାଗୁଣୀ ସାଜି
ପସନ୍ଦ ନକରି ସ୍ୱର୍ଗର ଦେବେନ୍ଦ୍ରଙ୍କୁ
ଗୁପ୍ତ ପ୍ରଣୟ ରଚନ୍ତି ରୂପସୀ ମେନକା
ମର୍ତ୍ତ୍ୟର "ଭକ୍ତ" ସହିତ ।
ପ୍ରକୃତି ପରିବର୍ତ୍ତନ ପାଇଁ
ଆପ୍ରାଣ ଅପଚେଷ୍ଟା କରି
ଅତିଷ୍ଠ ହୁଅନ୍ତି ଦେବେନ୍ଦ୍ର
ପରିତ୍ୟାଗ କରିପାରନ୍ତିନି
ପ୍ରବୃତ୍ତିକୁ ନିଜର ମେନକା ସୁନ୍ଦରୀ ।
ତନୁପାତଳୀ, ରୂପସୀ, ଗଣିକା
ମେନକାର ରୂପଶ୍ରୀକୁ ଏକା ଏକା
ଉପଭୋଗ କରିବାର ଲାଳସକୁ
ଚରିତାର୍ଥ କରି ନପାରି
ମନର ଯନ୍ତ୍ରଣାରେ ସର୍ବଦା
ମର୍ମାହତ ହୁଅନ୍ତି ଦେବେନ୍ଦ୍ର ।
ପୌରୁଷର ସ୍ଖଳନରେ
କ୍ଷତ ବିକ୍ଷତ ହୁଅନ୍ତି
ଶରବିଦ୍ଧ କ୍ରୌଞ୍ଚ ପକ୍ଷୀ ସମ ।



# ବିଧବା ବିଧୁରୀ

ଅପାଙ୍କ୍ତେୟ ବସ୍ତୁ ଭଳି
ସମାଜରେ ଘୃଣ୍ୟ
ନାକଟେକା ଲାଞ୍ଛନା ଓ
ନିର୍ଯାତନା ସହି
ବଂଚନ୍ତି ଅତିକଷ୍ଟେ
ବିଧବା, ବିଧୁରୀ
ସଂଦେହୀ ଚକ୍ଷୁରେ ।
କଥା ହେଲେ କେବେ କେଉଁ
ରମଣୀ ସହିତ
ଅବା କେହି ନାରୀ ଯଦି
ଆସେ କେବେ ଗୃହେ
କରନ୍ତି ସନ୍ଦେହ ସବୁ
ପୁରୁଷ ଓ ନାରୀ
ସତେ ବା ଯେମିତି କେହି
କାୟ ମନ ବାକ୍ୟେ
କରନ୍ତିନି ଚିନ୍ତାକେବେ
ପରକୀୟା ପ୍ରୀତି
ନିଜକୁ ଭାବନ୍ତି ସର୍ବେ
ସମାଜରେ ଆଜି
ଏକପତ୍ନୀ ବ୍ରତ ଧାରୀ
ରାମ, ସତୀ ସୀତା ।
ବିଧବା ବିଧୁରୀ ଯେତେ
ନାରୀ ଓ ପୁରୁଷ
ସତେ ଅବା କାମାଶକ୍ତ
ସମାଜେ କେବଳ ।



ଅପହରଣ, ଧର୍ଷଣ ଓ
ପରକୀୟା ପ୍ରୀତି
ଧରା ବଂଧା ଚାଲେ ଯେଉଁ
ସାମଜେ ସତତ
ପତ୍ନୀ ଥାଇ ପତି ଆଉ
ପତିଥାଇ ପତ୍ନୀ
ଗୁପ୍ତ ପ୍ରେମ ରଚେ ଯହିଁ
ଉପଭୋଗ ପାଇଁ
ଅଳି ସାଜି ଉଡ଼ି ଯଦି
ଫୁଲରୁ ଫୁଲକୁ
ମଧୁ ସଂଗ୍ରହ ବାସନା
ପୁରୁଷ ପ୍ରକୃତି
ନାନାରଂଗେ ସାଜି ଯଦି
ନିଜ ତନୁମନ
ପ୍ରତୀକ୍ଷା କରେ ପ୍ରେମିକା
ପ୍ରେମିକ ଆଗମେ
ବିଧବା ବିଧୁରୀ ତେବେ
ଘୃଣିତ କି ଦୋଷେ ?
ମନ କି ନଥାଏ ତାଙ୍କ ବିଳାସ ବ୍ୟସନେ
ଅନ୍ତରେ ଉଠେନା କିବା
ପେମର ଜୁଆର ?
ପେଟେ ଭୋକ ମୁହେଁ ଲାଜ
ରଖି ବାହାରକୁ
ସନ୍ୟାସୀ ଓ ସନ୍ୟାସୀନୀ
ସାଜି ବା କି ସାମାଜିକ ରୀତି ??



# " ଅବିଶ୍ୱାସୀ ପ୍ରତିବେଶୀ"

(ଆକ୍ରମଣ କାରୀ ପାକିସ୍ତାନ ପ୍ରତି)

ବ୍ୟକ୍ତିତ୍ୱ ନଥାଏ ଦେଖେଇ ହେବାରେ
ବଡ଼ପଣ ଆଉ ଗର୍ବ
"ଜେହାଦ୍" ନାଁରେ ସୃଷ୍ଟି କରିବାରେ
- ନରସଂହାରର ପର୍ବ
ମାନବକିତାହିଁ ଧର୍ମ
ମହାତ୍ମା ନେହେରୁ, ଅଟଳ ପରି ଯେ
ସହି କରେ ସବୁ କର୍ମ ।।୧

ବିରାଟ ଶକ୍ତି ବ୍ରିଟିଶ ଶାସକ
କିବା ନଥିଲାରେ ତାର
ସଂବଳ ହୀନ ଏ ଦେଶ ଜନତା
ସହି କେତେ ଅତ୍ୟାଚାର
ଅହିଂସାର ଶିକ୍ଷା ଦେଇ
ତଡ଼ି ଦେଲା ହେଲେ ସାମନ୍ତବାଦୀରେ
ସାଗର ସେପାରେ ନେଇ ।।୨



କି ଅଛିରେ ତୋର ଦେଖେଇ ହେଉଛୁ
ବଡ଼ିମା ଓ ବଡ଼ ପଣ
ପରର ଦୁଆରେ ହାତ ପାତି ତୋର
ଆଜୀବନ ଯାଏ ଦିନ
ବୁଝିପାରୁନୁରେ ମୂଢ଼
ବଡ଼ଲୋକି ଖାଲି ଦେଖଇେ ହେଲେକି
ହୁଏ କିରେ କିଏ ବଡ଼ । ? ।୩




କରବାଳ ମୂନେ ରକ୍ତର ନଦୀ
ବୁହାଇ ଅନେକ ବଳୀ
ପବିତ୍ର କ୍ଷେତ୍ର ଏ ଭାରତର ମାଟି
ଛୁଇଁ ଗଲେ ଦେଶେ ଚଳି
ଦିଗ୍‌ବିଜୟ ବରଜି
ଶାନ୍ତି ମୈତ୍ରୀ ଓ ହୃଦୟ ଜୟକୁ
ଧର୍ମ ବୋଲି ନେଲେ ଅରଜି ।।୪



ବନ୍ୟ ପଶୁ ସେ ଆକ୍ରମଣ ଯେ
କରେ ବର୍ବର ସମ
ସଂତ୍ରାସବାଦରେ ନର ସଂହାର
କରେ ଯେ ସେ ନରାଧମ
ଆମ ବଡ଼ିମା ପାଇଁ
ସାରା ପୃଥିବୀରେ ଘୃଣ୍ୟ ହୁଏ ସେ
ସମ୍ମାନ ପାଏ ନାହିଁ ।।୫

ପଶୁର ସିନାରେ ନାହିଁ ବୁଦ୍ଧିଜ୍ଞାନ
ନାହିଁ ବିବେକ ବିଚାର
ମାରେ ଅବା ମରେ ଏକ କଥା ତାର
ହୋଇ ଜ୍ଞାନର ବାହାର
ଭଲ ମନ୍ଦ ଜାଣେ ନାହିଁ
ମଣିଷ ହୋଇ ତୁ ପଶୁ ସମ କହ
ହେଉଛୁରେ କାହିଁ ପାଇଁ ।।୬



ପରଶ୍ରୀକାତର ଅସହିଷ୍ଣୁ ତାର
ଅଚିରେ ହୁଏ ବିନାଶ
ରାମଙ୍କ ରାଜ୍ୟରେ ରାବଣ କାର୍ଯ୍ୟରେ
କରୁଛୁ ସୃଜି ସଂତ୍ରାସ
ଅନିବାର୍ଯ୍ୟ ତୋର ଧ୍ୱଂସ
'ଅତିରୁ ଇତି' ତୋ ସମୟ ନିକଟ
ତେଣୁ ହୁଏ ମତିଭ୍ରଂଶ ।।୭

ଗର୍ବ ସବୁରି ଖର୍ବ ହୁଏରେ
ସହିବା ହିଁ ବଡ଼ପଣ
ବଡ଼ ବୋଲି ନିଜେ, ନିଜକୁ ଯେ ଭାବେ
ସେହି ଅଟେ ମତିହୀନ
ହୁଅରେ ସହନଶୀଳ
ମୂଷିକ ହୋଇ ତୁ ସିଂହର ଉପରେ
ଦେଖାନାରେ ବାହୁବଳ ।।୮



# ବେଙ୍ଗ କବି ସମ୍ମିଳନୀ



ବେଙ୍ଗମାନେ ଦିନେ କବି ସମ୍ମିଳନୀ କଲେ
ଉଚ୍ଚସ୍ୱରେ ରଡ଼ି ନିଜ କବିତା ଗାଇଲେ ।।

ବାହ୍ମୁଣିଆ ବେଙ୍ଗ, କାଠ ବେଙ୍ଗ, ପାଣିବେଙ୍ଗ,
ସୁମଦ୍ର କୂଳିଆ ବେଙ୍ଗ ଓ ମାଳୁଆ ବେଙ୍ଗ ।।

ଆଲାଜୁକ ଭଳି କବିତା ଗାଇଲେ ଯେଣୁ
'ନିର୍ଲ୍ଲଜଙ୍କ ସଭା' ନାଁ ତାର ଦେଲେ ତେଣୁ ।।

ଦେଖାଇବା ପାଇଁ ନିଜେ ନିଜ ବାହାଦୂରୀ
ଦଶବାର ବେଙ୍ଗ ବାଙ୍ଗବାର କଲେ ହୁରି ।।

ସାପଟିଏ ଡାକି ସଭାପତି ତହିଁ କଲେ
ଭେଁ ଭାଁ ରଡ଼ି ବାହାଦୁରୀ ଦେଖାଇଲେ ।।

କହିବାକୁ ଅବା ଗାଇବାକୁ ଦେଲେ ନାହିଁ
ଚୁପ୍‌ଚାପ ବସି ବୋର୍ ହୋଇ ଗଲା ସେହି ।।




କୁଜି ବେଙ୍ଗଙ୍କର ବାହାଦୂରୀ ଶୁଣି ଶୁଣି
ଭାବିଲା, 'ଢିଙ୍କିକୁ କାଠ' ଇଏ ଭାବିଲେଣି ।।

ଇଛାକଲେ ରଚିପାରେ ପ୍ରଳୟ ତାଣ୍ଡବ
ଥରହର ହେବେ ଟଙ୍କାରିଲେ ମୋ ଗାଣ୍ଡିବ ।।

ବିରକ୍ତ ହେଲା ସେ ଶୁଣି ଶୁଣି ବେଙ୍ଗ ରଡ଼ି
ଅଧା ସଭାରୁ ସେ ଚାଲିଗଲା ଉଡ଼ିପଡ଼ି ।।

ବୁଢ଼ା ବେଙ୍ଗଟିଏ ବସିଥିଲା ହୋଇ ତୁନି
କୁଜି ବେଙ୍ଗଙ୍କର ଗର୍ଜନ ତର୍ଜନ ଶୁଣି ।।

ଭାବିଲା ଏ ସବୁ ଦଣ୍ଡକିରି ମାଛ ପରି
ଅଳପ ପାଣିରେ ହେଉଛନ୍ତି ଫିରିଫିରି ।।



ଗଭୀର ପାଣିରେ ରୋହିମାଛ ଥାଏ ରହି
ଦଣ୍ଡକିରି ତାର ମହତ୍ୱ ବୁଝିବେ କାହିଁ ?

ଯେଉଁ ବେଙ୍ଗ ବେଶୀ ବାହାଦୁରୀ ଦେଖାଇଲେ
କୁଜି ବେଙ୍ଗମାନେ ସଂବର୍ଦ୍ଧନା ତାଙ୍କୁ ଦେଲେ ।

ସଂବର୍ଦ୍ଧନା ପାଇ ସେମାନେ ହୋଇଲେ ଖୁସ୍
କମଳା ବଦଳେ ପିଇଲେ କାଞ୍ଜିଆ ଜୁସ୍ ।

ମାନପତ୍ର ଆଉ ପଦବୀରେ ହେଲେ ଖୁସି
ଦୂରଦର୍ଶନରେଦେଖିଲେ ନିଜକୁ ବସି ।



ସମ୍ମିଳନୀ କରି ନଜ ପ୍ରଶଂସା ଗାଇଲେ
ନିଜର ସୁନାମ ନିଜେ ସେ ପ୍ରଚାର କଲେ ।

"ଭଲ" କହି ବୋଲି, ଯେ କେହି ଆଜି ପାରିଲା
ପଚାମାଛ ବିକି ସିଏ ବଡ଼ ଲୋକ ହେଲା ।

ନିଜର ଡିଣ୍ଡିମ ଯେତେ ଯେ ଆଜି ପିଟିଲା
ସେତେ ସିଏ ତାର ନାଁ କମେଇ ପାରିଲା ।

ନିଜ ସ୍ୱାର୍ଥପାଇଁ ସମସ୍ତେ ତ ଆଜି ବାଇ
କିଏ ବା କାହାକୁ ପଚାରୁଛି କୁହଭାଇ ??



# "କିଏ ବ୍ୟଙ୍ଗ କବି ହେବ ଆସ"



ଟ୍ରେନିଙ୍ଗ ସେଣ୍ଟାର ଖୋଲିଚି ମୁଁ କିଏ
ବ୍ୟଙ୍ଗ କବି ହବ ଆସ
ବ୍ୟଙ୍ଗ କବିତା ବାଟି ପିଆଇବି
ଯିଏ ହବ ମୋର ଶିଷ୍ୟ ।୧।

ଲାଙ୍ଗୁଡ଼ ଧରି ମୋ ବୁଲିବ ପଛରେ
କବିରେ ପାଇବ ଯଶ
କବି ମାନଙ୍କୁ ମୁଁ ଅକବି କରିବି
ପିଆଇ ବ୍ୟଙ୍ଗରସ ।୨।

ସାଙ୍ଗରେ ବୁଲେଇ ପ୍ରମୋଟ କରିବି
ଯିଏ ହବ ମୋର ଶିଷ୍ୟ ।
ଗୁରୁକଲେ ମତେ ଦୂରଦର୍ଶନରେ
ଚେହେରା ହୋଇବ ଦୃଶ୍ୟ ।୩।

ଦୀକ୍ଷା ନେଲେ ଏକ "ବ୍ୟଙ୍ଗ ନାମ" ଦେବି
ସେ ନାମେ ହେବ ପ୍ରଚାର
ମୋଧର୍ମେ "ଭୂବନ" ନିଅଥରେ ଭାଇ
(ଆଉ) ସ୍ୱର୍ଗ ହେବନାହିଁ ଦୂର ।୪।



ବ୍ୟଙ୍ଗ ସାହିତ୍ୟ ଏକାଡେମି ଗଢ଼ି
(ମୁଁ) ସ୍ୱର୍ଗରେ ଇନ୍ଦ୍ରହେବି
ବ୍ୟଙ୍ଗ କବିଙ୍କ ସମ୍ମିଳନୀ କରି
(କେବଳ) ଶିଷ୍ୟଙ୍କୁ ଚାନ୍ସ ଦେବି ।୫।

ବ୍ୟଙ୍ଗ ଗୋଷ୍ଠୀଟିଏ ଗଠନ କରି ମୁଁ
ନେତା ସେଥିରେ ସାଜିବି
ବ୍ୟଙ୍ଗ କବିତା ଲେଖକ ମାନଙ୍କୁ
ପଦ ପଦବୀ ବାଣ୍ଟିବି ।୬।

(ମତେ) ଗୁରୁ ନକରି ଯେ ବ୍ୟଙ୍ଗ ଲେଖିବ
(ତାଙ୍କୁ) ଶିଶୁକବିରେ ଗଣିବି
ନିଜକୁ ବର୍ଯ୍ୟସ୍କ ସାହିତ୍ୟିକ ଭାବେ
ନିଜେ ପ୍ରଚାର କରିବି ।୭।

ଧନ୍ୟ ହେ ବ୍ୟଙ୍ଗ କବି ତମେ ଧନ୍ୟ
ଧନ୍ୟ ତମର ଶିଷ୍ୟ
ନିଜର ପ୍ରଶଂସା ନିଜେ ଗାଉକର
ବ୍ୟଙ୍ଗ କବିତା ଚାଷ ।୮।



# "ବ୍ୟଙ୍ଗ କବି ପାଲା"



ବ୍ୟଙ୍ଗ ପାଲାକାର ମୁଁ ପାଲାକରି ବୁଲେ
ପାଳିଆ ସାଥିରେ ଧରି
ନାହିଁ ଖୋଳ,ତାଳ, ନାହିଁ ମୋ ଚାମର
(ତଥାପି) ସତ୍ୟପୀର ଯାନ୍ତି ଡ଼ରି ।୧।

ପୂର୍ବେ ପାଲାକାର ପାଲା କରୁଥିଲେ
କବିଙ୍କ କାବ୍ୟ କବିତା
ନିଜ କବିତା ମୁଁ ଗାଇ ପାଲାକରେ
ବଢ଼ାଇ ନିଜ ମାନ୍ୟତା ।୨।

ନିଜର ପ୍ରଶଂସା ନିଜେ ଗାଇ କରେ
ନିଜ କବିତ୍ୱ ପ୍ରଚାର
ବ୍ୟଙ୍ଗ କବି ଭାବେ ନାଁ କରିବାକୁ
କରିଛି ମନେ ବିଚାର ।୩।

ବୁଲି ବୁଲି ତେଣୁ ସାରା ଓଡ଼ିଶାରେ
ବ୍ୟଙ୍ଗ ପାଲା ମୁଁ କରିବି
ଶୁଣୁବା ନଶୁଣୁ କିଏ ମୋର ପାଲା
ନିଜେ ମୁଁ ତ ଖୁସି ହେବି ।୪।

"ବ୍ୟଙ୍ଗ କବି ସମ୍ମିଳନୀ" ନାଁରେ ମୁଁ
ମୋ କବିତା ପାଲା କରେ
ସିରିଣି ବଦଳେ ଭାତ ଡ଼ାଲମା ରେ
ପୂଜା କରି ପେଟ ଭରେ ।୫।

ପାଞ୍ଚ ସାତ ନେଇ ପାଳିଆ ସାଥିରେ
ଗାଆଣ ସାଜେ ମୁଁ ତହିଁ
କୃତାର୍ଥ ହୁଅନ୍ତି ପାଳିଆମାନେ ମୋ
ପାଲାରେ କବିତା ଗାଇ ।୬।

"ବ୍ୟଙ୍ଗନାମ" ତାଙ୍କୁ ଦେଇ ପରିଚିତ
କରେ ମୁଁ ହିଁ ସବୁଠାରେ
ତୁଳସୀ ସହିତ ଶୋଭାପାଏ ଯଥା
"ପଟ" ଠାକୁର ମଥାରେ ।୭।

ଅନ୍ୟ କିଏ ବ୍ୟଙ୍ଗ ସମ୍ମିଳନୀ କଲେ
ବରଦାସ୍ତ କରେ ନାହିଁ
କଳେ ବଳେ ସେଠି ପାଲାକରେ ଯାଇ
ନିଜ ବହାଦୁରୀ ପାଇଁ ।୮।

ଦେଖଣା ହାରିଏ ନଥାନ୍ତୁ ପଛକେ
ପାଲା ମୁହିଁ ସେଠି କରେ
ନିଜପାଲା ନିଜେ ଦେଖି ସନ୍ତୋଷରେ
ପାଳିଆ ସହିତ ଫେରେ ।୯।

"କବି ସମ୍ରାଟ" ଥିଲେ ସିନା ଜଣେ
ମୁଁ ବ୍ୟଙ୍ଗ ସମ୍ରାଟ ହେବି
ତାଙ୍କ କାବ୍ୟ ପାଲାକାର ଗାଉଥିଲେ
ମୋ କବିତା ମୁଁ ଗାଇବି ।୧୦।

ସାରା ଓଡ଼ିଶାରେ ପାଲା ଦଳ ନେଇ
ବ୍ୟଙ୍ଗ ପାଲା ମୁଁ କରିବି
"ବ୍ୟଙ୍ଗ ପାଲାକାର" ସାଜି, ମଣିଷରୁ
ମାରୁଆଡ଼ି ବନିଯିବି ।୧୧।



# କଳି ଯୁଗର ସତ୍‌ପଥ (ଲୋଳିକା)

ଭଜୁକିନା ରାମ ନାମରେ କୁମର,
ଭଜୁକିନା ରାମ ନାମ
ଭଜିନପାରିଲେ ଏ କଳିଯୁଗରେ
ସଞ୍ଚ ତୁହି କଳାଧନରେ କୁମର (ଘୋଷା)

ଏହି କାଳଯମ ବଡ଼ ନିଦାରୁଣ
ନଜାଣଇ ଭଲ ମନ୍ଦ
ଧନ ପାଖେ ଥିଲେ ସବୁ ସମ୍ଭବରେ
ନରହିବ କିଛି ଦ୍ୱନ୍ଦରେ କୁମର ।୧।

ମନ୍ତ୍ରୀ ହୁଅ ଥରେ ଉଚ୍ଚପଦବୀରେ
ରହ ହେବୁ ବଡ଼ଲୋକ
ଦେବୁ ଦିଆଇବୁ ଦେପଦ ଲଭିବୁ
ଘୁଞ୍ଚିଯିବ ସବୁ ଦୁଃଖରେ କୁମର ।୨।

ସାତ ପୁରୁଷକୁ ଧନ ତୁ ସଞ୍ଚିବୁ
କରିବୁ ତୁ କୋଠାବାଡ଼ି
ଟଙ୍କାବଳେ ପରେ ଭୋଅଟ ଜିତିବୁ
ବସିବୁ ଆସନ ମାଡ଼ିରେ କୁମର ।୩।





ଦେଶର ଉନ୍ନତି ନାଁରେ ବିଦେଶୀ
ଋଣତୁ ବୋହି ଆଣିବୁ
ଲୋକ ଦେଖାଣିଆ କିଛି କାମ କରି
ବାକି ତୁ ଚଳୁ କରିବୁ ରେ କୁମର ।୪।

ଯିଏ ନପାଇବେ ହାଉ ହାଉ ହେବେ
ଧରାଇବୁ କିଛି ଟଙ୍କା
ପାଟି ନଖୋଲିବେ ପଛେ ଗୋଡ଼ାଇବେ
ମୁହଁ ହୋଇଯିବ ବଙ୍କାରେ କୁମର ।୫।

ସଂଖ୍ୟାଲଘୁ ପ୍ରତି ସୁଦୃଷ୍ଟି ତୁ ଦେବୁ
ଭୋଅଟ ରହିବ ତାତେ
ଦେଶ ଜନତାଙ୍କୁ ଲାଗୁ ଯେ ଆଇନି
ନ ଲାଗିବ ତାଙ୍କ ହିତେ ରେ କୁମର ।୬।

ପଛୁଆ ବର୍ଗଙ୍କୁ ସୁବିଧା ତୁ ଦେବୁ
ଭୋଅଟ ତେବେ ପାଇବୁ
ମଧ୍ୟାହ୍ନ ଭୋଜନ କରି ପ୍ରଚଳନ
ଗରିବଙ୍କୁ ମୋହି ନେବୁରେ କୁମର ।୭।

ବେକାରିଆ ଗୁଣ୍ଡା ଟୋକା ଦଳେ ପାଶେ
ରଖିବୁ ତୁ ସବୁବେଳେ
ଜିନ୍ଦାବାଦ କରି ତୋଗୁଣ ଗାଇବେ
ସାହା ହେବେ ଗଣ୍ଡଗୋଳେରେ କୁମର ।୮।

ପାଞ୍ଚବର୍ଷ ଯେନ ତେନ ପ୍ରକାରେଣ
ମାରିନେବୁ ସଂଚି ଧନ,
ଧନବଳେ ପୁଣି ଲଢ଼ିତୁ ଯିତିବୁ
ପରବର୍ତ୍ତୀ ନିର୍ବାଚନ ରେ କୁମର ।୯।

ନଜିତିଲେ କିଛି ଅସୁବିଧା ନାହିଁ
ପେନ୍‌ସନ୍ ତୋ ମିଳିବ
ଚଉଦ ପୁରୁଷ ବସିଖାଇଲେବି
କଳାଧନ ଜମା ଥିବ ରେ କୁମର ।୧୦।

ଅଧ୍ୟାପକ ଯଦି ହେବୁ ତୁ ବାବୁରେ
ଟିଉସନ୍ ତୁ କରିବୁ
ଘରେ, କଲେଜରେ, ଦୁଇଆଡୁ ମିଶି
ମୋଟା ଅର୍ଥ ତୁ ପାଇବୁ ରେ କୁମର ।୧୧।



ଡାକ୍ତର ଚାକିରି କରିବୁ ବାବୁରେ
ରୋଗୀ ସେବା ତୁ କରିବୁ
ଘରୋଇ ଚିକିତ୍ସା କଲେ ଦୁଇଆଡୁ
ଭଲ ପଇସା ପାଇବୁରେ କୁମର ।୧୨।

ମାଛ ଖାଇବୁ ତୁ ଇଲିସିରେ ବାବୁ
ଚାକିରୀ କର ପୁଲିସି
ବନ ବିଭାଗରେ ଚାକିରୀ କଲେ ତୁ
ଧନ କମାଇ ବୁ ବସିରେ କୁମର ।୧୩।

ସରକାରଙ୍କର ଧନର ଭଣ୍ଡାର
ବଣ ପାହାଡ଼ ଜଙ୍ଗଲ
ଗାଢେଡୁ ଜଗିବୁ ଶେଷ ହେଲା ସବୁ
ଶିଶୁ, ଶାଳ, ପିଆଶାଳ ରେ କୁମର ।୧୪।

ଇଞ୍ଜିନିଅର ତୁ ହେବୁ ଆରେ ବାବୁ
ନିର୍ମାଣ ବିଭାଗେ ରହି
ଅକଳନ୍ତି କଳାଧନତୁ ସଂଚିବୁ
କିଛି ନକରିବେ କେହିରେ କୁମର ।୧୫।





ଯୋଗାଣ ବିଭାଗେ ଚାକିରୀ କଲେତୁ
ସବୁ ଯୋଗାଇବେ ତୋତେ
ଯେତେ ତୁ ପାରିବୁ ଧନ ତୁ ସଂଚିବୁ
ଅସୁବିଧା ନାହିଁ ମୋଟେ ରେ କୁମର ।୧୬।



ଆଇ.ଏ. ଏସ୍. ହେଲେ ସଚିବ ହେବୁତୁ
ଅବା ହେବୁ କଲେକ୍ଟର
ଧନ ମାନ ଯଶ ପାଇବୁ ଅବଶ୍ୟ
ରାଜଗାଦୀ ସେ ତୋହର ରେ କୁମର ।୧୭।

ଏହିପରି କେତେ ପଥଏ ଜଗତେ
ଅଛି ତୋ ସୁବିଧା ପାଇଁ
ବାଛି ନେ ବାବୁରେ ହେବୁତୁ ଅଚିରେ
ଧନୀ ମାନୀ ଗୁଣ ଗ୍ରାହୀରେ କୁମର ।୧୮।







# "ବିଚାରୀ ଅଙ୍ଗନା"

କେତେ ଯେ ସୁନେଲି ସ୍ୱପ୍ନନେଇ
ସାକ୍ଷୀ ରଖି ଅଗ୍ନି ଦେବତାଙ୍କୁ
ଭଗିନୀ, ଜାୟା ଓ ଜନନୀ ରୂପରେ
ଗଢ଼ିବାକୁ ସୁନାର ସଂସାର
ଜୀବନର ଚଲାପଥରେ
ସଂକଳ୍ପ କରି, ଥାପିଥିଲୁ ପାଦ ।

ସୀତା, ସାବିତ୍ରୀ ସମ
ସତୀ ସୀମାନ୍ତିନୀର ଦେଶରେ
ନିର୍ଯାତୀତା, ଧର୍ଷିତା, ଲାଂଛିତା
ଅସମ୍ମାନୀତା ଓ ପରିତ୍ୟକ୍ତା ହୋଇ
କ'ଣ ବା ପାଇଲୁ ଜୀବନରେ ?



ବଂଶ ମର୍ଯ୍ୟାଦା, ଉଚ୍ଚଶିକ୍ଷା, ରୂପଶ୍ରୀ
କ'ଣ ବା ନଥିଲା ତୋର ?
ଆତ୍ମାଭିମାନ ,ଗର୍ବ, ଦମ୍ଭ ଅହଂକାର
ଆଉ କ୍ରୋଧରେ ଅନ୍ଧ ହୋଇ
ନଷ୍ଟ କରିଦେଇ ସବୁ କିଛି ନିଜର
ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ।



କଳଙ୍କିନୀ ମୁକୁଟ ପିନ୍ଧି
ନିଜେ ଜଳି, ଅନ୍ୟକୁ ଜଳାଇ
କ'ଣ ବା ପାଇଲୁ ପୌରୁଷ ?
ଏଇ କ'ଣ ସାର୍ଥକତା ନାରୀ ଜୀବନର ?
ହାୟ,ହାୟ, ହତ ଭାଗିନୀ
ବିଚାରୀ ଅଙ୍ଗନା ।।



# କହି ଜାଣିଲେ କଥା ସୁନ୍ଦର



କହି ଜାଣିଲେ କଥା ସୁନ୍ଦର
ନାଇ ଜାଣିଲେ ମଥା ସୁନ୍ଦର ।

ଦେଇ ଜାଣିଲେ ଦାତା ସୁନ୍ଦର
ନେଇ ଜାଣିଲେ ନେତା ସୁନ୍ଦର ।

ଚାଲି ଜାଣିଲେ ବାଟ ସୁନ୍ଦର
ନାଚି ଜାଣିଲେ ନାଟ ସୁନ୍ଦର ।

ଶୋଇ ଜାଣିଲେ ଖଟ ସୁନ୍ଦର
ଖାଇ ଜାଣିଲେ ପେଟ ସୁନ୍ଦର ।

ଗାଇ ଜାଣିଲେ ଗୀତ ସୁନ୍ଦର
ଗରମ ବସ୍ତ୍ର ଥିଲେ ଶୀତ ସୁନ୍ଦର ।



କ୍ଷୀର ଭଲ ଦେଲେ ଗାଇ ସୁନ୍ଦର
ସଂପର୍କ ଭଲଥିଲେ ଭାଇ ସୁନ୍ଦର ।

ରୋଜଗାର ଭଲ କଲେ ପୁଅ ସୁନ୍ଦର
ମାନ୍ ଇଜତ ରକ୍ଷାକଲେ ଝିଅ ସୁନ୍ଦର ।

ରୁଚୁ ନରୁଚୁ ଖାଇ ଜାଣିଲେ ପିତା ସୁନ୍ଦର
ଅର୍ଥ ବୁଝି ଗାଇ ଜାଣିଲେ ଗୀତା ସୁନ୍ଦର ।

ଯଉତୁକ ନ ନେଲେ ଯୋଇଁ ସୁନ୍ଦର
ଚନ୍ଦ୍ରାଲୋକେ ଫୁଟେ ବୋଲି କଇଁ ସୁନ୍ଦର ।

କବିମାନେ ବସିଥିଲେ ସଭା ସୁନ୍ଦର
କେଶ ବିନ୍ୟାସ ସାଜି ଜାଣିଲେ ଗଭା ସୁନ୍ଦର ।

## ଏଠି ସବୁ ଚଳିବ

ଅଭିନୟ କରି ଜାଣିଲେ ମଞ୍ଚ ସୁନ୍ଦର
ଅଫିସର ନେଇ ଜାଣିଲେ ଲାଞ୍ଚ ସୁନ୍ଦର ।

ମନ୍ଦ ମନ୍ଦ ବହୁଥିଲେ ପବନ ସୁନ୍ଦର
ସାଥୀଟିଏ ପାଶେଥିଲେ ଜୀବନ ସୁନ୍ଦର ।

ରକ୍ଷଣା ବେକ୍ଷଣ କରି ଜାଣିଲେ ସଂପତ୍ତି ସୁନ୍ଦର
ପତିପାଶେ ପତ୍ନୀଥିଲେ ଦମ୍ପତି ସୁନ୍ଦର ।

ଷ୍ଟାଇଲ କରି ପିନ୍ଧି ଜାଣିଲେ ଶାଢୀ ସୁନ୍ଦର
ଗୋରୀ ହାତେ ନାଲିକଳା ଚୂଡ଼ି ସୁନ୍ଦର ।

ଢୋଲ ଭଲ ବଜାଇ ଜାଣିଲେ ହାଡ଼ି ସୁନ୍ଦର
ବାଗେଇ କରି ରଖି ଜାଣିଲେ ନିଶ ଆଉ ଦାଢି ସୁନ୍ଦର ।





ଗଛ ଲତା ଲଗେଇ ଜାଣିଲେ ବାଡ଼ି ସୁନ୍ଦର
ବିରିବାଟି ପକେଇ ଜାଣିଲେ ବଡ଼ି ସୁନ୍ଦର ।

ସିଧା କରି ଲେଖି ଜାଣିଲେ ଧାଡ଼ି ସୁନ୍ଦର
ପକ୍କା ଢଂଗ ବୋଲି ସମ୍ବଲପୁରୀ, ଧଡ଼ି ସୁନ୍ଦର ।

ଫୁଟାଣିଆ କହି ଜାଣିଲେ ଫୁଡ଼ି ସୁନ୍ଦର
ଛୋଟପିଲା ଲେଖି ଜାଣିଲେ ଶ୍ଲେଟ୍ ଓ ଖଡ଼ି ସୁନ୍ଦର ।

ପାଗ କରି ଭାଜି ଜାଣିଲେ ମୁଢି ସୁନ୍ଦର
ଚେହେରାକୁ ସାଜି ଜାଣିଲେ ବୁଢି ସୁନ୍ଦର ।

ସାନ ଭଉଣୀ ବାନ୍ଧି ଜାଣିଲେ ଭାଇ ହାତେ ରାକ୍ଷୀ ସୁନ୍ଦର
ଚକା ଚକା ଡୋଳା ବୋଲି ଜଗନ୍ନାଥ ଆଖି ସୁନ୍ଦର ।



# ଅସହ୍ୟ ଏ ଦୁର୍ନୀତି ଦୁର୍ବାର

ହେ ସର୍ବ ଦଷ୍ଟା
ତୁମେ କି ଦେଖନା ଏଇ
ବ୍ୟଭିଚାର, ଅନାଚାର, ଅତ୍ୟାଚାର, ଉତ୍ପୀଡ଼ନ
ଆଉ ନିଃସ୍ୱ, ନିରୀହ, ନିପୀଡ଼ିତ, ନିଷ୍ପେସିତ
ଜୀବନର କରୁଣ ପ୍ରତିମୂର୍ତ୍ତି ?
ହେ ସର୍ବଜ୍ଞାତା
ତୁମେ କି ଜାଣନା ଏଇ-
ବ୍ୟଥିତ, ବ୍ୟାକୁଳିତ, ଆଶାହତ
ବ୍ୟର୍ଥ ବିଡ଼ମ୍ବିତ, ଅଭିସନ୍ତପ୍ତ
ଅନ୍ତରର ସକରୁଣ ଗାଥା ?
ଜାଣ ଯଦି ସବୁ, ଦେଖ ଯଦିସବୁ, ବୁଝଯଦି ସବୁ



ସ୍ତବଧ ତେବେ କୁହକିମ୍ବା ତୁମର ଆୟୁଧ ?
ଯେ ଅଭିନୟ ରଚିଥିଲ କରୁକ୍ଷେତ୍ର ସମର ପ୍ରାଙ୍ଗଣେ
ସେ ଚକ୍ର କି ନାହିଁ ଆଜି ତୁମ କରେ ।
ଆହେ ଗିରି ଟେକା
ଅଲକ୍ଷରେ ରହି ଯେବେ
ଯୋଗାଇଲେ କୋଟି ବସ୍ତ୍ର ଅବଳା ନିର୍ଯାତନେ
ଏବେକି କଂପେନି ସେଇ ତୁମ
ବୈକୁଣ୍ଠ ଆସନ ?
ଭୁଲିନିକି ପଶାଖେଳେ ଦାନ ?
ଶୁଭେନିକି ଆଜି ସେଇ-
ଆକୁଳ, ବ୍ୟାକୁଳ, ବ୍ୟଥାକୁଳ କ୍ରନ୍ଦନର ଧ୍ୱନି ?
ଶୁଭେନିକି ଆଜି ସେଇ
ଆତୁର, କାତର, ବ୍ୟଥାତୁର ଜୀବନର



ସକରୁଣ ଆର୍ତ୍ତ ଚିତ୍କାର ?
ଶୁଣ, ଶୁଣଥରେ ହେ ସର୍ବ ଶକ୍ତିମାନ ।
ସ୍ୱମୁଖ ନିଃସୃତ ସେଇ ତୁମ ବାଣୀ ଆଜି
ସତ୍ୟ ହେଉ ପ୍ରତ୍ୟକ୍ଷ ରୂପରେ
ଦନୁଜ ମାରଣେ ଆଉ ସଜ୍ଜନ ତାରଣେ
ହୁଅ ପ୍ରଭୁ ଆବିର୍ଭାବ ବାରେ ।
ସାଂପ୍ରତିକ ସମାଜରେ ଆଜି
ଦେଖାଦିଏ ଭୀଷଣ ବୈଷମ୍ୟ
ପୁଞ୍ଜିପତି ଧନିକର ନିଃସ୍ୱ, ନିରନ୍ନ-
ନିରୀହରେ ତୀବ୍ର ନିର୍ଯାତନା
ସ୍ୱାର୍ଥାନ୍ୱେଷୀ ଶାସକର ହିଟଲରୀ ନୀତି
ଚିତା ଚଇତନ କାଟି ଧର୍ମବକ ସାଜି




ହାତରେ ତୁଳସୀମାଳା ଭିତରେ ଭଣ୍ଡାମୀ
ଦେଶ ସେବକ ବୋଲାନ୍ତି ନିଜସ୍ୱାର୍ଥ ପାଇଁ
ଅନୀତି, ଦୁର୍ନୀତି ଲିପ୍ତ ସର୍ବଦା ସମସ୍ତେ
ଅଭାବର ତୀବ୍ର ତାଡ଼ନାରେ
ତିଳତିଳ ହୋଇ ସୁଖେ ଗରିବର ରକ୍ତ
ନରହତ୍ୟା, ବଧୂହତ୍ୟା, ପରସ୍ତ୍ରୀ ହରଣ
ଅତ୍ୟାଚାର, ଅନାଚାର, ଉତ୍ପୀଡ଼ନ ଆଦି
ଅର୍ଥବଳେ ସବୁ ଲୁଚେ ଧନିକ ମହଲେ ।
ଗରୀବର ତଣ୍ଟିଚିପି ଖଟାଇ ଖଟାଇ
ପୁଞ୍ଜିପତି ମୁଠାକରେ ଦିନୁ ଦିନଟାଣ
ଅଭାବେ ସ୍ୱଭାବ ନଷ୍ଟ ହୁଏ ଧନ ହୀନ
ଗରୀବ ମାଇପ ଶାଳୀ ହୁଏ ଧନୀକର
ବାରବିଳାସିନୀ ସାଜେ ଅର୍ଥ ଲାଳସାରେ
ଯେଉଁ ସମାଜେ ପୁରୁଷ ଉପଭୋଗ ପାଇଁ



ବାର ବାର ବାର୍ଦ୍ଧକ୍ୟରେ କରେ ପରିଣୟ
ଏଇ ସେ ସମାଜେ ପୁଣି ଷୋଡ଼ଷୀ ରୂପସୀ
ବୈଧବ୍ୟ ଯନ୍ତ୍ରଣା ଭୋଗେ ହବିଷ୍ୟାନ୍ନ କରି
ବର୍ଷି ସଦା ଅଶ୍ରୁବାରି ସନ୍ୟାସିନୀ ବେଶେ ।
ରୂପର ସଂଭାର ଆଉ ଆଶାର ସଉଧ
ଧୂଳିସାତ ହୁଏ ତାର ଚିର ଦିନ ପାଇଁ
ମନକି ନଥାଏ ତାର ବିଳାସ ବ୍ୟସନେ
ଅନ୍ତରେ ଉଠେନା କିବା ପ୍ରେମର ଜୁଆର
ଦୀନା, ହୀନା, ଘୃଣିତା ସେ ଅନାଥିନୀ ନାରୀ
ନିର୍ଯ୍ୟାତୀତା ନିଷ୍ପେଷିତା ଅବଳା ଦୁର୍ବଳା ।

x x x x x

ହାୟରେ ବିଧାତା !
କିଥିଲା ଏ ଦେଶର ବିଗତ ଅତୀତ





କି ହୋଇଛି ଆଜି
ସୁନାର ଭାରତ ଆଜି ଅନ୍ତଃସାର ଶୂନ୍ୟ
ଜୀବନକୁ ବଳୀଦେଇ ଏ ଦେଶ ସ୍ୱରାଜ
ଯେ ମହାତ୍ମା ଆଣି ଦେଲେ ତାଙ୍କରି ଈପ୍ସିତ
ରାମ ରାଜ୍ୟ ହେଲାନାହିଁ ଏ ଦେଶେ ପ୍ରତିଷ୍ଠା ।
ଆହା, କି ଦୁର୍ବିସହ ଦୁଃଖେ ତାଙ୍କ ଅନ୍ତରାତ୍ମା
ହେଉଥିବ ଛଟପଟ ପରଲୋକେ ଥାଇ ।
ସାମନ୍ତ ବାଦକୁ ତଡ଼ି ଦରିଆ ସେପାରେ
ଏ ଦେଶର ଶାନ୍ତି ଆଉ ସମୃଦ୍ଧିର ଲାଗି
ପ୍ରତିଷ୍ଠିତ ହେଲେ ଯିଏ ଦେଶର କଲ୍ୟାଣେ
ଲୋକ ପ୍ରତିନିଧି ଆଉ ଉଚ୍ଚ କର୍ମଚାରୀ
ଆସନର ମଦେ ମନେ ବହି ଅହଂଭାବ
ନୈତିକତା କରି ତ୍ୟାଗ, ସ୍ୱାର୍ଥାନ୍ୱେଷୀ ସାଜି



ବିଦେଶୀ ଶିକ୍ଷା ସଭ୍ୟତା ଅନୁକରଣରେ
ନକରି ଭ୍ରୂକ୍ଷେପ ଜନ ସମୂହ କଲ୍ୟାଣେ
ଅନୁଧ୍ୟାନ କରି ସଦା ଆତ୍ମସାତ ନୀତି
ପ୍ରିୟାପ୍ରୀତି ତୋଷଣ ଓ ଉତ୍କଟ ଉତକୋଚେ
ମତ୍ତସର୍ବେ ଦୁର୍ନୀତିର ସୀମାହୀନ ରାଜ୍ୟେ ।
ଧର୍ମାନ୍ଧ କୃତଘ୍ନ ସଂଖ୍ୟାଲଘୁ କତିପୟ
ପରଶ୍ରୀକାତର ଆଉ ଅସହିଷ୍ଣୁ ସାଜି
'ସର୍ବଧର୍ମ ସମନ୍ୱୟ ନୀତି' ର ସୁଯୋଗେ
ଯେଦେଶେ ଆଶ୍ରିତ, କରି ଜୀବିକା ନିର୍ବାହ
ଅଣ୍ଡିଚ୍ଛୁରୀ ନିଜ ତଣ୍ଟି କାଟିବା ନ୍ୟାୟରେ



ଗୁପ୍ତେ ସଦା ଲିପ୍ତ ସେଦେଶ ଅକଲ୍ୟାଣେ ।
ଅସହ୍ୟ, ଅସହ୍ୟ, ପ୍ରଭୁ, ଏ ଦୁର୍ନୀତି ଦୁର୍ବାର
ଯାଗବାରେ ଦୀନବନ୍ଧୁ ଦୁଃଖୀ ଦୁଃଖ ହାରୀ
ଯାଗ ପ୍ରଭୁ ଶୁଳପାଣୀ ହେ ଉମା ମହେଶ
ଯାଗ ମା' ଦୁର୍ଗା, କାଳୀ ମହିଷାସୁର ମର୍ଦ୍ଦିନୀ
ସୃଷ୍ଟି କର ଭୀମ ରୂପୀ ପ୍ରଳୟ ତାଣ୍ଡବ
ଧ୍ୱଂସକର, ଏ ଦେଶର ଦୁର୍ନୀତିଗ୍ରସ୍ତ ମହିଷାସୁର ମାନଙ୍କୁ
ଧ୍ୱଂସକର, ଅତ୍ୟାଚାରୀ, ସ୍ୱାର୍ଥାନ୍ୱେଷୀ ରାବଣ ମାନଙ୍କୁ
ସୃଷ୍ଟି କର ରାମରାଜ୍ୟ ଏ ଭାରତ ଭୂମେ ।।



୧୯୬୭-୬୮ରେ ରଚିତ ଓ ୧୯୯୬ରେ ପାରାଦ୍ୱୀପରୁ ମନସ୍ୱିନୀରେ ପ୍ରକାଶିତ ।

# ଆମେ ତଳିଆ କର୍ମଚାରୀ

ପେଟ ପୋଷିବାକୁ ଚାକିରୀ କରିଛୁ ଆମେ
ଦିବାନିଶି ଖଟୁ ଗଧପରି ଆମ କାମେ
ସମବେଦନା ଓ ସାନ୍ତ୍ୱନା ପରିବର୍ତ୍ତେ
ଧମକ ଦିଅନ୍ତି ଉପର ହାକିମ ଯେତେ
କେତେ ବା ସହିବୁ ଆଉ
ବେଡ଼ି ଉପରେ ଯେ କୋରଡ଼ା ଦେଉଛ
ଅସହ୍ୟ ତ-ମ-ର ଦାଉ.......... ।୧।



ଆମେ ପ୍ରାଥମିକ ସ୍କୁଲ ଶିକ୍ଷକ
ଶିକ୍ଷା ମାଧମରେ ଦେଶ ରକ୍ଷକ
ଆମେ ଗଢୁ ମୂଳଦୁଆ ଦେଶର
ମନ୍ତ୍ରୀ, ଲେଖକ, ସୈନିକ ଆବର
ସରକାରଙ୍କର ଦାଉ
ବିଭିନ୍ନ କାମର ଦାୟିତ୍ୱ ଦିଅନ୍ତି
ପାଠ ପଢା ପଢେ ନୋହୁ ।୨।

ଆମେ ଯେତେ ଯେତେ ଅଛୁ ପିଅନ
ଅଟୁ ସବୁଠାରୁ ଅତି ନିଉନ
ବାସନ ମଜାରୁ ପିଲା ଧରାଯାଏ ସକଳ
କାମ କରି କରି ଗୁଡୁମ୍ ଆମର ଅକଲ
କିଏ ବୁଝେ ଆମ ଦୁଃଖ
ମାସିକ ବେତନ, ଅଟେ ସର୍ବନିମ୍ନ
ମୁହେଁ ଲାଜ ପେଟେ ଭୋକ ।୩।




ଆମେ ବ୍ଲକର ଗ୍ରାମ ସେବକ
ଫିଲ୍ଡମ୍ୟାନ୍ ଆଦି ତଳକର୍ମଚାରୀ ଯେତେକ
ବ୍ଲକରେ ସବୁ କାମ କରୁ ଆମେ କଷ୍ଟରେ
ବି.ଡ଼ି.ଓ ନିଅନ୍ତି ବାହା ବା ଖାଲି ଉପରେ
କିଏ ବୁଝେ ଆମ ଦୁଃଖ
ସବୁ ଅଫିସ୍‌ର ଘଇତା ଆମର
ଦେଖି ପାରନ୍ତିନି ସୁଖ ।୪।

ଆମେ ଅଫିସର ଯେତେ କିରାଣୀ
କିସ ବଖାଣିବୁ ଆମ କାହାଣୀ
ସକାଳ ନଅରୁ ରାତି ନଅବାଜେ
ତେବେ ବି ଫାଇଲ୍ ସରେନି
ମହଙ୍ଗା ବଜାର ଭାଉ
ବିନା ଉପୁରିରେ ଦରମା ଅଣ୍ଟେନି
କେମିତି ଚଳିବୁ ଆଉ ? ।୫।



ପଶୁ ପାଳନ ଓ ପଶୁଚିକିତ୍ସାର ବିଭାଗେ
ଏଲ୍.ଆଇ ଯେତେ ଚାକିରୀ କରୁଛୁ ସରବେ
ହଇରାଣ ଆଉ ହିନସ୍ତାରେ ଆମ
ଅବସ୍ଥା ଘାଏଲ ହେଲାଣି



ସରକାରଙ୍କର ଅବିଚାର ଆମ
ଚାକିରୀ ସରାଗ ନେଲାଣି
କା' ଆଗେ କହିବୁ ଆଉ
ସବୁ କାମ କରି ଆମ ଯଶନାହିଁ
ଭି.ଏ.ଏସ୍ ମାନଙ୍କ ଭାଉ ।୬।

ସ୍ୱାସ୍ଥ୍ୟ ବିଭଗରେ ଚାକିରୀ କରୁଛୁ
ଆମେ ଯେତେ ଫାର୍ମାସିଷ୍ଟ
ହେଲ୍ଥ ଆସିଷ୍ଟାଣ୍ଟ, ହେଲ୍ଥ ଇନ୍‌ସପେକ୍ଟର ଆଦିକରି ଆମଗୋଷ୍ଠି
ଯୋଗ୍ୟତା ସମାନ ଦରମାରେ ଆମ
ଆକାଶ ପାତାଳ ପ୍ରଭେଦ
ଆମର ଭିତରେ ସୃଷ୍ଟି ହୁଏ ତେଣୁ

ଅଯଥାରେ ନାନା ବିଭେଦ
ଡାକ୍ତରଙ୍କର ଦାଉ
ଉପରି ପଇସା ସବୁ ସେ ନିଅନ୍ତି
କେତେ ବା ସହିବୁ ଆଉ ।୭।

ଆମେ ଏ.ଏନ୍.ଏମ୍ ଆଉ ମଲ୍ଟିପରପୋସ ୱାର୍କର
ଦଫା ରଫା ଆମ ବୁଲି ବୁଲି ନିତି ଘର ଘର
ଫିଲଡ଼୍‌ରେ ଯାହା ଅସୁବିଧା ଆମେ
ବଖାଣିବୁ ଆଉ କେତେ



ଯେତେ ବୁଝାଇଲେ ଶିକ୍ଷା ଅଭାବରୁ
ବୁଝନ୍ତିନି ଆମ ଲୋକେ
କୋଉଠୁ ଆଣିବୁ କେସ ?
ଅଫିସର ଖାଲି ଧମକ ଦିଅନ୍ତି ଚାକିରୀ ତମର ଶେଷ ।୮।



ନାରୀ କର୍ମୀ ଯେତେ ନର୍ସ,ଧାଇ ଆଉ ମାଷ୍ଟ୍ରାଣୀ
ଗ୍ରାମ ସେବିକା ଓ ହେଲ୍ଥ ଭିଜିଟର, କିରାଣୀ
ପେଟଲାଗି ଆମେ ଚାକିରୀ କରୁଛୁ ବୋଲି
ସମସ୍ତଙ୍କ ଦୃଷ୍ଟି ଆମରି ଉପରେ ଖାଲି
ଉପାୟ ନାହିଁ ଆମରି
ସହିବାକୁ ସବୁ ବାଧ ଯେଣୁ "ଆମେ ତଳିଆ କର୍ମଚାରୀ" ।୯।



(୧୯୭୬-୭୭ରେ ରଚିତ)

# ଗାନ୍ଧି ସ୍ମରଣେ (ଭାରତ ଜନନୀର ବିଳାପ)



ମହାନ୍ ସାଧକ, ସତ୍ୟବ୍ରତର-
ବିହୂନେ ଭାରତ ଜନନୀ
ପାଗଳିନୀ ସମ ବ୍ୟଥିତ ଅଂତରେ
ବାହୁନେ ଦିବସ ରଜନୀ
ବାପୁରେ, କାହିଁ ଗଲୁ ଧନ ମାଳିରେ
ତୋ ଅଭାବେ ଆଜି ଲାଗେ ସବୁ ଶୂନ୍ୟ
ଝୁରୁଛି ମୁଁ ଭାଳି ଭାଳିରେ, ବାପୁରେ.. ।୧।

ଭଗୀରଥ ଯେହ୍ନେ ଗଂଗା ଆଣିଥିଲେ
କଠୋର ତପସ୍ୟା ବଳେରେ
ମୁକ୍ତ କଲୁତୁ ସେହିପରି ମୋତେ
ଅସାଧ ସାଧନା ଫଳେରେ
ଗାନ୍ଧିରେ, ସାଜିଲୁ ଲଙ୍ଗଳା ଫକୀର
ତୋ ଗୁଣ ସୁମରି ବ୍ୟଥିତ ଅଂତରେ
କାନ୍ଦି ମୁଁ ମରେ ନିରଂତର, ଗାନ୍ଧିରେ ।୨।

ସବ୍ୟସାଚି ସେ ପାଶୁପତ ଅସ୍ତ୍ରେ
ଧରାପୃଷ୍ଠେ ଥିଲା ଅଜେୟ
ଅହିଂସା ଅସ୍ତ୍ରରେ ଚମକାଇ ଧରା
କଲୁତୁ ଭାରତ ବିଜୟ
ମୋହନ, ଲୋତକେ ପୂରେ ମୋନୟନ
ଦେଇ ଗଲୁ ଯେଉଁ ଦାରୁଣ ଯନ୍ତ୍ରଣା
ସହିପାରେନା ସେ ଦହନ, ମୋହନ ।୩।

ରାମକୃଷ୍ଣ ଆଉ ବୁଦ୍ଧପରିତୁ
ସବୁଗୁଣେ ଥିଲୁ ପୁରିରେ
ନୟନୁ ମୋହର ଅଶ୍ରୁ ଶୁଖେନି
ନିରତେ ମୁଁ ମରେ ଝୁରିରେ
ଆଉକି ପାଇବି ତୋପରି ସଂତାନ
ସତେକି ଆସିବୁ ଫେରି ମୋର କୋଳେ
ଆରେ ମୋର ଗଲା ରତନ, ଆଉକି ।୪।

ରାମ ରଜ୍ୟତୂ କରିବୁ ପ୍ରତିଷ୍ଠା
ତୋ ଦେଶ ଭଉଣୀ ଭାଇରେ
ସୁଖେ ରହିବେ ଲକ୍ଷ୍ୟତୋହର
ପୂରଣ ତ ହେଲା ନାହିଁରେ
ଧନରେ ଅନ୍ୟାୟ ଅତ୍ୟାଚାର ରେ
କିଙ୍କାପୋତା ଆଉ, କଳା ବଜାରରେ
ଶୂନ୍ୟ ହେଲା ଅନ୍ତଃସାରରେ ଧନରେ ।୫।

ଆଜି ବି ମିଳେନି ଖାଇବାକୁ ଆଉ
ପିନ୍ଧିବାକୁ ଦୁନା କନାରେ
ଶାସକ ଦଳ ଯେ ଶୋଷକ ହୋଇଲେ
ସରଗେ ଥାଇ ତୁ ଅନାରେ
ଶାସନ, ବିଶୃଙ୍ଖଳା ହେଲା ଦେଶରେ
ପ୍ରିୟାପ୍ରୀତି ଆଉ ଉତ୍କଟ ଉତ୍କୋଚେ
ଅମଲା ରହିଲେ ତୋଷରେ, ଶାସନ ।୬।



ଗରିବ ବାପୁଡ଼ା ପାଏ ନାହିଁ ଆଜି
ଦରବାରେ ନ୍ୟାୟ ବିଚାର
ଫଟା ଘୁଁଜା ସିନା କରନ୍ତା ସେ କାମ
କିନ୍ତୁ ସେ ବିଚରା ନାଚାର
ଦୁର୍ଦ୍ଦଶା, ରୋଗେ, କରମ ଆଦରିରେ
ଦରଦାମ ବୃଦ୍ଧିଲାଗି ଦୁଇ ଓଳା
ପାରେନି ଉଦର ଭରିରେ ଦୁର୍ଦ୍ଦଶା..... ।୭।

ଏବେ ବି ହୋଇନି ଜାତି ଭେଦଦୂର
ଛୁଆଁ ଅଛୁଆଁ ଯେ ରହିଛି,
ଧନୀର ଆଖିରେ ଗରିବ ଆଜିବି
ପଶୁଠାରୁ ହୀନ ହୋଇଛି
ଏସବୁ, ନ ଦେଖୁ କି ବାବୁ ସରଗେ
ଅବହେଳିତ ଏ ସମାଜ ଆଖିରେ
କେତେ କେତେ ନାରୀନର ଯେ ଏସବୁ ।୮।

ଶିକ୍ଷିତ ଯୁବକ ବେକାର ବୁଲନ୍ତି
କାମ ଧନ୍ଦା କିଛି ନ କରି
ବୈଦେଶିକ ଶିକ୍ଷା, ଶିଖାଇଛି ଖାଲି
ପାଠପଢି କର ଚାକିରୀ
ମୌଳିକ, ଶିକ୍ଷାତୋ ସଫଳ ନୋହିଲା
ତା କଳ୍ପିତ ଗ୍ରାମ୍ୟ ସ୍ୱରାଜ୍ୟ କେବଳ
କଳ୍ପନା ରେ ସିନା ରହିଲା, ମୌଳିକ ।୯।




ବିଶୃଙ୍ଖଳା ଲାଗି ଶାସନ କ୍ଷେତ୍ରରେ
ବିପ୍ଳବ କରେ ଯୁବକ,
ଭାଇ ଚାଳେ ଗୁଳି ଭାଇର ବୁକୁରେ
ହରାଇ ତା ବୁଦ୍ଧି ବିବେକ
ଏହାକି, ଏ ଦେଶର ନୀତି ନିୟମ
ସାମନ୍ତ ବାଦର ଘୃଣ୍ୟ ରାଜନୀତି
ଆଜିବି ହେଉଛି କାଏମ, ଏହାକି ।୧୦।

ନିଶା ନିବାରଣ ପରିବର୍ତ୍ତେ ଏବେ
ମଦ ବିକ୍ରି ସଂଖ୍ୟା ବଢିଲା
ବଡ଼ବଡ଼ିଆ କେ ତ୍ରିତଳ ପ୍ରାସାଦେ
ହଁ ସୁଲି ଶେଜରେ ଗଡ଼ିଲା
ମୂଲିଆ, ମଦପିଇ ଭୋକେ ସଢିଲା
ଚାଉଳ ମୁଠିଏ ଘରେ ନାହିଁ ପିଲା
କବିଲାଙ୍କ ହଁସା ଉଡ଼ିଲା ମୂଲିଆ ।୧୧।

ପରମୁଖା ପେଖି ନ ହେବା ପାଇଁକି
ଥିଲା ତୋ ପ୍ରଧାନ ନିର୍ଦ୍ଦେଶ
ନିଜକାମ ନିଜେ କରିଚଳ କେହି
ନିର୍ଭର ନକର ବିଦେଶ
ଖଦଡ଼ ବ୍ୟବହାର କର ସରବେ
କୁଟି ଖାଇ କାଟି ପିନ୍ଧି ଚଳ ସଦା
ନିର୍ଭୟ ମନେ ଗରବେ, ଖଦଡ଼...... ।୧୨।



କବାଟ କଣରେ, ଗୃହବନ୍ଧନରେ
ନାରୀଙ୍କର ଦେଖି କଷଣ
ନାରୀ ପ୍ରଗତି ଓ ନାରୀ ଶିକ୍ଷା ଲାଗି
ସହିଲୁ ତୁ କେତେ ଦୂଷଣ
ସମାଜେ ବଢ଼ିଲା ନାରୀଙ୍କ ସମ୍ମାନ ।
ଦେଶ ବିଦେଶରେ କ୍ଷାତ ନାମା ହେଲେ
ଲଭି ଦେଶେ ଉଚ୍ଚ ଆସନ, ସମାଜେ ।୧୩।

ଶାନ୍ତ ନୀତି ତୋର ନାହିଁ ଆଜି ଖାଲି
ଅଶାନ୍ତିର ନିଆଁ ଜଳୁଛି
ଭାତୃଭାବ ନାହିଁ ଦେଶ ଦେଶ ମଧ୍ୟେ
ହିଂସାକାଣ୍ଡ ଖାଲି ଚାଲିଛି
ପୃଥିବୀ, ଧ୍ୱଂସ ମୁଖର ହୋଇଲା
ମାରଣାସ୍ତ୍ର ଗଢି ସବୁ ଦେଶ ଆଜି
ବଡ଼ ହେବା ପାଇଁ ଚାହିଁଲା, ପୃଥିବୀ ।୧୪।

ସର୍ବଧର୍ମ ପ୍ରତି ସମନ୍ୱୟ ଭାବ
ହୃଦେ ଥିଲା ଏକା ତୋହର
ଜନ୍ମ ଦେଇ ତୋତେ ସାରା ପୃଥିବୀରେ
ଗଉରବ ଥିଲା ମୋହର
ସତେକି ସ୍ୱରାଜ ଅକ୍ଷୁର୍ଣ୍ଣ ରଖିବେ
ଦଳାଦଳି ତେଜି, ଭେଦଭାବ ଭୁଲି
ଭାଇ,ଭାଇ ଏକାହୋଇବେ,ସତେକି ।୧୫।



ନିଶି ଦିବସରେ ବ୍ୟଥିତ ଅଂତରେ
ଚାହିଁଛି ମୁଁ ତୋର ସରଣୀ
ଦୂରକର ହିଂସା ରକ୍ତ ପାତ ନିଶା
ଚାଲି ତୋ ଅହିଂସା କରଣୀ
ଫେରିଆ, ଫେରିଆ ଶୀଘ୍ରମୋ କୋଳେରେ
ଦୁଃଖ ମୋହର ଦୂରକର ବାବୁ
ଭାଷେ ମୁଁ ନୟନ ଜଳେରେ, ଫେରିଆ ।୧୬।



(ଗାନ୍ଧି ଶତବାର୍ଷିକୀ ଉତ୍ସବ ପାଳନ ଅବସରରେ କଳାହାଣ୍ଡି ଜିଲ୍ଲାର କର୍ଲାପଡ଼ା ହାଇସ୍କୁଲରେ ପାଳିତ ଉତ୍ସବରେ ୧୯୭୦ରେ ପଠିତ)

# ଫୁଲ ବଉଳ ବେଣୀ

(ସାଂପ୍ରତିକ ଘଟଣାବଳୀ ଉପରେ ଆଧାରିତ ବ୍ୟଙ୍ଗ କବିତା)

ଇନ୍ଦ୍ରଧନୁ ସାତରଙ୍ଗ ଲୋ ଫୁଲ ବଉଳ ବେଣୀ
କ୍ଷଣେ କ୍ଷଣେ ପୃଥ୍ୱୀ ଆନ ହୁଏ ବୋଲି
ବେଙ୍ଗୁଲିକୁ କହେ ବେଙ୍ଗ ଲୋ ଫୁଲ ବଉଳବେଣୀ ।୧।



ଡ଼େଇଁ ଡ଼େଇଁ ଗଲା ବେଙ୍ଗଲୋ ଫୁଲ ବଉଳ ବେଣୀ
ସୀତାରାମ ଗଲେ ସୋନିଆ ଧଇଲେ
କଂଗ୍ରେସ ନାଆର ମଙ୍ଗଲୋ ଫୁଲ ବଉଳବେଣୀ ।୨।

ସରିଗଲା ନିର୍ବାଚନ ଲୋ ଫୁଲ ବଉଳବେଣୀ
ମେଣ୍ଟ ସରକାର, ନାହିଁ ପରକାର
ଅଡୁଆ ହେଲା ଶାସନ ଲୋ ଫୁଲ ବଉଳବେଣୀ ।୩।





ବାବାଜୀ ମୁଣ୍ଡରେ ଜଟା ଲୋ ଫୁଲ ବଉଳ ବେଣୀ
ଏପଟେ ମମତା, ସେପଟେ ଲଳିତା
ଏନ୍.ଡି.ଏ ହଟହଟା ଲୋ ଫୁଲ ବଉଳବେଣୀ ।୪।

ନିମଫୁଲ ବଡ଼ ପିତା ଲୋ ଫୁଲ ବଉଳ ବେଣୀ
ମାରିଖାଇଗଲେ ପ୍ରତିରକ୍ଷା ଅର୍ଥ
ମିରି ଚାକିରିଆ ନେତା ଲୋ ଫୁଲ ବଉଳ ବେଣୀ ।୫।

ଫଙ୍କେ ଫୁଟେ ମଲି କଢି ଲୋ ଫୁଲ ବଉଳବେଣୀ
ଘରୋଇ କରଣ ବିଜୁଳି ନିଗମ
ଟାକ୍ସ ଯାଏ ବଢି ବଢି ଲୋ ଫୁଲ ବଉଳ ବେଣୀ ।୬।

ପିଲାକାହେ କଇଁ କଇଁ ଲୋ ଫୁଲ ବଉଳ ବେଣୀ
ନାରୀ ନିର୍ଯାତନା ଦିନୁ ଦିନ ବଢେ
ପ୍ରତିକାର କିଛି ନାଇଁ ଲୋ ଫୁଲ ବଉଳ ବେଣୀ ।୭।

କା' କା' ରାବେ କାଉ ଲୋ ଫୁଲ ବଉଳ ବେଣୀ
ଶିକ୍ଷିତ ଯୁବକ ବେକାର ବୁଲନ୍ତି
ଚାକିରି ନମିଳେ ଆଉ ଲୋ ଫୁଲ ବଉଳ ବେଣୀ ।୮।

ମହିରେ ସାହାଣ ମେଲା ଲୋ ଫୁଲ ବଉଳ ବେଣୀ
ଅସାମାଜିକତା ବଢିଲା ଦେଶରେ
ଶାସନ ହୋଇଲା ଢିଲା ଲୋ ଫୁଲ ବଉଳ ବେଣୀ ।୯।

ଭଲା କଳିକାଳ ହେଲା ଲୋ ଫୁଲ ବଉଳ ବେଣୀ
ପାଶ୍ଚାତ୍ୟ ଫେସନ, ହେଲା ପ୍ରଚଳନ
ନାରୀ ଅଙ୍ଗ ପ୍ରଦର୍ଶନ କଲା ଲୋ ଫୁଲ ବଉଳ ବେଣୀ ।୧୦।

# ଷଣ୍ଢ ମାତିଛି



ଷଣ୍ଢ ମାତିଛି ରେ ଭାଇ
ମାନେ ନା ସେ କିଛି ସାନ ଅବା ବଡ଼
ଜର୍ସି, ହରିଆନା ଗାଇ ।୧।
ଷଣ୍ଢ ମାତିଛିରେ ଦେଖ
ଦେଖିଲେ ସେ ଗାଇ କିଛି ମାନେ ନାହିଁ
ମାଡ଼ି ଆସେ ସେ ସଳଖ ।୨।
ଷଣ୍ଢ ଯେ ସବୁ ମାତିଲେ
ହେଉ ବା ନ ହେଉ ଗରମ ଗାଇ ସେ
ପଛେ ପଛେ ଗୋଡ଼ାଇଲେ ।୩।
ଷଣ୍ଢ ମାତିବାର ଦେଖି
ଛଡ଼ା ସବୁ ଭଡ଼ା ଲାଗୁଛନ୍ତି କଡ଼ା
ପାଉଣା ହାତରେ ରଖି ।୪।
ଭଲା ମାତିଲେ ରେ ଷଣ୍ଢ
ବାଛୁରୀ ସହିତେ ସଂଗମ କରିଲେ
ନାଗସାପ ହେଲେ ଧଣ୍ଡ ।୫।
ଷଣ୍ଢ ମାତିଲା ଦେଶରେ
ବାର ବୁଲା ଷଣ୍ଢ ଗୁଡ଼ାଏ ମେଳାଇ
ନେତା ସାଜିଲା ଶେଷରେ ।୬।
ରାଜ୍ୟରେ ମାତିଲା ଷଣ୍ଢ
ତିରିଶିଟା ଜିଲ୍ଲା ନାମ ମାତ୍ର କଲା
ଜନତା ଯେ ଲଣ୍ଡଭଣ୍ଡ ।୭।
ରାଜଧାନୀ ଷଣ୍ଢ ମାତି
ମାରି ନେଇଛନ୍ତି ମହାପାତ୍ରେ ସବୁ
ଏବେ, ଜଳକାଯେ ଚାହିଁଛନ୍ତି ।୮।
ଷଣ୍ଢ ମାତିଛି କଟକେ
ହାର ଛିଣ୍ଡାଇ ସେ ହିରୋହୁଣ୍ଡା ଚଢି
ପଳାଇ ଯାଏ ଛଟକେ ।୯।
ସବଡ଼ିଭିଜନରେ ଷଣ୍ଢ
ମାତିଛି ରେ ଭାଇ ହୁଏ ଖାଲି ବାଇ
କ୍ଷୌରିବ କାହାର ମୁଣ୍ଡ ।୧୦।
ବ୍ଲକଷଣ୍ଢ ମାତିଛି
ଯାହାକାମ ହେବ ପଣି ସେ ପାଇବ
ଭୋଅଟ ସିଏ ଜିତିଛି ।୧୧।
ସର୍ବତ୍ର ଷଣ୍ଢ ମାତିଲେ
ଗାଇ ଏକା ଦେଖି ବହୁ ଷଣ୍ଢ ମିଶି
ଗଣ ଧରଷଣ କଲେ ।୧୨।
ଭଲାଏ ଷଣ୍ଢ ମାତିଲେ
ଶିକ୍ଷିତ ଷଣ୍ଢ ଏ ଚାକିରି ନପାଇ
ବେକାର ହୋଇ ବୁଲିଲେ ।୧୩।



# ଆଜିର ସାମାଜିକ ଜୀବନ ଓ ଯୌତୁକ ବ୍ୟାଧି



ସମାଜରେ ଆଜି ଯୌତୁକ ରାକ୍ଷସ
କରି ପ୍ରଭୁତ୍ୱ ବିସ୍ତାର
କେତେ ଯେ ନିରୀହ ଜୀବନ କରୁଛି
ନଷ୍ଟଭ୍ରଷ୍ଟ ଛାର ଖାର ।୧।
ନବ ବଧୂଟିଏ ନବ ଉଲ୍ଲାସରେ
ମନେ କେତେ ଆଶାନେଇ
ନୂତନ ସଂସାର ଗଢିବାକୁ ତାର
ଆସେ ଅନ୍ୟଗୃହେ ଧାଇଁ ।୨।
ସ୍ୱପ୍ନର ସଉଧ ହୁଏ ଧୂଳିସାତ୍
ଅକସ୍ମାତ୍ ପାହେ ରାତି
ଯୌତୁକ ଜୁଇରେ ଜଳିପୋଡ଼ି ତାର
ଜୀବନର ହୁଏ ଇତି ।୩।
ଯଉତୁକ ନେବା ଯଉତୁକ ଦେବା
ପ୍ରଥା ଯଦିବା ପ୍ରାଚୀନ
ଦାତା ଇଛା ଯାହା ଦେଉଥିଲା ତାହା
ଗ୍ରହୀତା କରେ ଗ୍ରହଣ ।୪।
ଦାବି କରିବାର ହୀନ ମନ୍ୟତା
ଲବେ ନଥିଲା ଅତୀତେ
କନ୍ୟା ସୁନା ଦେଇ ବରି ଆଣୁଥିଲେ
ସମ୍ଭ୍ରାନ୍ତ ବଂଶ ସମ୍ଭୁତେ ।୫।



ସମାଜରେ ଆଜି ଏକ ମହାବ୍ୟାଧି
ହୋଇଛି ଯୌତୁକ ଦାବି
ଜନଯାଗ୍ରଣ କେବଳ ଔଷଧ
ପାରିଲେ ପ୍ରତ୍ୟେକ ଭାବି ।୬।
ଦେବା ନାହିଁ କେହି ନେବା ନାହିଁ କେହି
ଭାବିବେ ଯେବେ ସରବେ
ତେବେ ଯା କେଜାଣି ଯୌତୁକ ନିରୋଧ
ହୋଇପାରିବ ସମାଜେ ।୭।
ସବୁ ବଧୂହତ୍ୟା ଯୌତୁକ ଜନିତ
ନୁହେଁ ଆଜି ସମାଜରେ
ପୂର୍ବର ପ୍ରେମିକ ପ୍ରେମିକାକୁ ନେଇ
ଅପ୍ରୀତି ନିଜ ନିଜରେ ।୮।
ପରସ୍ପର ପ୍ରତି ସ୍ନେହପ୍ରେମ ଭାବ
ଆସେ ନାହିଁ ହୃଦେ ଯେଣୁ
ଅବୁଝା ମଣାରୁ ମନାନ୍ତର ହୁଏ
ଉପୁଜଇ ଦ୍ୱନ୍ଦ୍ୱ ତେଣୁ ।୯।
ଅବିଶ୍ୱାସ ବୃଦ୍ଧିପାଇ ଆତ୍ମହତ୍ୟା
ଅବା ହୁଏ ବଧୂହତ୍ୟା
ଯୌତୁକ ଯାତନା କେସ୍ କରାଯାଏ
କନ୍ୟା ତରଫୁ ଅଗତ୍ୟା ।୧୦।



ଅନେକ ଦୃଷ୍ଟାନ୍ତ ଅଛି ଏହିପରି
ସହନ ଶୀଳତା ବିନା
ପତିପତ୍ନୀ ମଧ୍ୟେ ସ୍ନେହପ୍ରେମ ପ୍ରୀତି
ଭାବ ରହେନାହିଁ ଯମା ।୧୧।
ମନାନ୍ତର ଆଉ ମତାନ୍ତର ହୋଇ
ଶେଷରେ ବିଛେଦ ହୁଏ
ପ୍ରତିଶୋଧ ପରାୟଣ କନ୍ୟାପିତା
ଯଉତୁକ କେଶ୍ ଦିଏ ।୧୨।
ଯୌତୁକ ଯାତନା ସହୁଛନ୍ତି ଆଜି
ବହୁ ନବ ବଧୂଦେଶେ
ନ ଦେଇ ଯାତନା ଭୋଗୁଛନ୍ତି ମଧ
ଜେଲ ଦଣ୍ଡ କେତେ ଶେଶେ ।୧୩।
ଉଦ୍ଧାରିବା ପାଇଁ କନ୍ୟାବୋଝ ପିତା
ସବୁ ଦେବି କହି ଦିଏ
ନଦେଇ ପଛରେ ଠକେ ଯେଣୁ କନ୍ୟା
ଯୌତୁକ ଯାତନା ସହେ ।୧୪।



ସତମିଛ ନ୍ୟାୟ ଅନ୍ୟାୟ କିଏବା
ବୁଝୁଛି ଆଜି ଦେଶରେ
ନିଜ ସ୍ୱାର୍ଥ ପାଇଁ ସର୍ବେ ଏଠିବାଇ
ଲୁଟନ୍ତି ସାଧୁ ଦେଶରେ ।୧୫।
ଯିଏ ପ୍ରଣୟନ କରନ୍ତି ଆଇନ
ସେମାନେ ଏକା ଭାଙ୍ଗନ୍ତି
ଶାସକ ଏଠାରେ ଶୋଷକ ଭାବରେ
ରହିଶାସନ କରନ୍ତି ।୧୬
ପଚିଶ ହଜାର ଟଙ୍କାରେ ସିମୀତ
କରି ଯଉତୁକ ଦାନ
ଯାଗା, କୋଠାବାଡ଼ି, କାର ଦେଇଥାନ୍ତି
ପ୍ରୀତି ଉପହାର ମାନ ।୧୭।
ବଡ଼ଲୋକ ପାଇଁ ପ୍ରୀତି ଉପହାର
ଗରିବର ଯଉତୁକ
ଆଇନ କାନୁନ୍ ଗରିବ ପାଇଁ କି
ମାନେ ନା ତା ବଡ଼ଲୋକ ।୧୮।
ସମସ୍ୟା ବହୁଳ ଆଜି ଏ ସମାଜ
ସମାଧାନ କେ କରିବ ?
ସଚେତନ ହେଲେ ଜନତା ନିଶ୍ଚୟ
ଦୁଃଖ ଦୁର୍ଦ୍ଦଶା ଘୁଞ୍ଚିବ ।୧୯।



# ମଧୁବନ ଦହନ

କର୍ମ ଅନୁସାରେ ସୁଖ ଦୁଃଖ ଭୋଗ
କରିଥାଏ ସଦା ନର
ଅଯଥାରେ ଦୋଷ ଦିଏ ଈଶ୍ୱରଙ୍କୁ
ଦୁଃଖରେ ହୋଇ କାତର
ନିଜସ୍ୱ ପ୍ରାରବ୍ଧ ବଳେ
ନିର୍ଦ୍ଧାରିତ ଲଗ୍ନେ ହୁଏ ଜନ୍ମ ମୃତ୍ୟୁ
ପୂର୍ବାର୍ଜିତ କର୍ମଫଳେ ।।୧

ଖାଣ୍ଡବ ବନ ଦହନ କରିଥିଲେ
ଅର୍ଜୁନ ମହାରଥୀ
ବନ୍ୟଜନ୍ତୁ ସହ ପୋଡ଼ିଥିଲେ ସିନା
ବୃକ୍ଷଲତା ଗୁଳ୍ମ ରାଜି
ମଧୁବନ ଦହନରେ
ଜଳିପୋଡ଼ି ହେଲେ ଜୀବନ୍ତ ଦଗ୍ଧ
କେତେଯେ ନିରୀହ ନରେ ।୨।

ବ୍ୟକ୍ତିର ବାଦ୍‌ରୁ ଗୋଷ୍ଠିର ବାଦ୍‌ରେ
ପରିଣତ ଆଜି ଧର୍ମ
ନିଜସ୍ୱବାଦ୍‌ର ପ୍ରବକ୍ତାରୁ ଗୁରୁ
ନିଏ "ଭଗବାନ" ଜନ୍ମ
ପ୍ରତ୍ୟକ୍ଷରେ ପାଏ ପୂଜା
ମୃତ୍ୟୁ ଅନ୍ତେତାର ପ୍ରତିକୃତି ଅବା
ସନ୍ତକରେ ଉଡ଼େଧ୍ୱଜା ।୩।

"ସକଳ" ଭୂତରେ ଈଶ୍ୱର" ସତ୍ୟ
ଲୁଚିଯାଏ କେଉଁ ଆଡ଼େ
ବ୍ୟକ୍ତିର ପୂଜାରେ ରୂପାନ୍ତର ହୁଏ
ଧର୍ମାନ୍ତର ଚାରିଆଡ଼େ
ବୁଝି ବୁଝେନା ମଣିଷ
ଗୋଷ୍ଠିର ବାଦ୍‌ରେ ବଳିପଡ଼ିକରେ
ନିଜର ନିଜତ୍ୱ ନାଶ ।୪।

ଧର୍ମାନ୍ଧ ଭାବରେ ଗୋଷ୍ଠିରେ ମିଶନ୍ତି
ବୋଲାଇ ଧର୍ମାଚାରୀ
ଅନ୍ୟ ଗୋଷ୍ଠିଠାରୁ ଦୂରେଇ ରହନ୍ତି
ନିଜକୁ ଶ୍ରେଷ୍ଠ ବିଚାରି
ସଂପର୍କର ସେତୁ ବାନ୍ଧି
ନିଜ ନିଜ ମଧ୍ୟେ ବ୍ୟଭିଚାରେ ଲିପ୍ତ
ପ୍ରେମରେ ହୁଅନ୍ତି ଧନ୍ଦି ।୫।

ମୂଳ ଗୁରୁପରେ ଭାଗଭାଗ ହୁଏ
ଧର୍ମାଚାରର ପଥ
ଗୁରୁଙ୍କ ସମ୍ପତ୍ତି ପାଇଁ ହୁଏ ସୃଷ୍ଟି
ନାନା ପ୍ରକାର ଅନର୍ଥ
ଧନ୍ୟ ଏ ଗୁରୁ ଭକ୍ତି
କେତେ ପରିବାର ଆଜି ଛାରଖାର
ଏକି ଜୀବନର ଗତି ।୬।

ମଧୁବନ ଆଜି ଯତୁ ଗୃହ ହେଲା
ଭୋଗିଲେ ନର୍କ ଯାତନା
ମୃତ୍ୟୁ ଅନ୍ତେ ନାହିଁ ସଦ୍‌ଗତି ଆହା
ପ୍ରେତାତ୍ମା ହୋଇବେ ସିନା
ହିନ୍ଦୁଧର୍ମ ଅନୁସାରେ
କରାଗଲା ନାହିଁ ଅନ୍ତିମ ସଂସ୍କାର
ଜଳିଲେ କିରୋସିନିରେ ।୭।

ଯେଉଁମାନେ ମଲେ ତ୍ରାହି ପାଇଗଲେ
ବଂଚି ମରୁଛନ୍ତି ଯିଏ
ରୌରବ ନର୍କରେ ପଡ଼ି ଭୋଗୁଛନ୍ତି
ଯନ୍ତ୍ରଣା କେତେ ଯେ ହାଏ
କିଏ ବା ବୁଝୁଛି ଦୁଃଖ
ମରଣ ସହିତ ସଂଗ୍ରାମ କରନ୍ତି
ଜୀବନରେ ନାହିଁ ସୁଖ ।୮।

ଆଚରଣ ଆଉ କର୍ତ୍ତବ୍ୟରେ ଯଦି
ନାହିଁ ସଚ୍ଚୋଟ ପଣିଆ
ପରଘର କେବେ ହେବ କି ନିଜର
ହେଲେ ବି ଦିନ କୁଣିଆଁ
ଦେଖେଇ ହେଲେ କି ଲାଭ
ବିରାଡ଼ି ବୈଷ୍ଣବ ସାଜିଲେ କି କେବେ
ମୂଷା ପାଖକୁ ଆସିବ ।୯।

ଗୁରୁଙ୍କୁ ଇଶ୍ୱର କହନ୍ତି ଅନେକେ
ଗୁରୁ ନୁହଁନ୍ତି ଇଶ୍ୱର
ସୃଷ୍ଟି, ସ୍ଥିତି, ଲୟ କାରଣ ଇଶ୍ୱର
ହର୍ତ୍ତା, କର୍ତ୍ତା ଏ ବିଶ୍ୱର
ଗୁରୁପଥ ପ୍ରଦର୍ଶକ,
ଆଧ୍ୟାତ୍ମିକ ମାର୍ଗେ ଚାଲିବାକୁ ସିନା
ଗୁରୁ ଦେଖାନ୍ତି ଆଲୋକ ।୧୦।

ଶ୍ରୀରାମଙ୍କ 'ଗୁରୁ' ବିଶିଷ୍ଠ ହେଲେ ବି
ରାମଥିଲେ "ଭଗବାନ"
"ସନ୍ଦିପନି" ଗୁରୁଥିଲେ ମାତ୍ର କୃଷ୍ଣ
ଥିଲେ "ସ୍ୱୟଂପରବ୍ରହ୍ମ"
ଶ୍ରେଷ୍ଠ ଧର୍ମ ସନାତନ
ଦେଇଛନ୍ତି ମତ ଜ୍ଞାନୀ ଗୁଣୀ ବୁଦ୍ଧ
ଆର୍ଯ୍ୟ ମୁନୀ ଋଷିଗଣ ।୧୧।

ଗୋଷ୍ଠିବାଦ୍‌ର ସମୁହ ପ୍ରାର୍ଥନା
ବିଧର୍ମୀ ମାନଙ୍କ ପାଇଁ
ବାନ ପ୍ରସ୍ଥ ଆଉ ବନ୍ୟାଶ୍ରମ କଥା
ଆର୍ଯ୍ୟ ଋଷିଛନ୍ତି କହି
ବସ୍ତୁବାଦୀ ହୋଇ ଆଜି
ସ୍ୱାର୍ଥାନ୍ଧ ମାନବ ଭୋଗୁଛି ଯାତନା
ସତ୍ୟନ୍ୟାୟ ମାର୍ଗ ତେଜି ।୧୨।

ବି.ଦ୍ର : ବାରିପଦା ରେ "ସ୍ୱାମୀ ନିଗମାନନ୍ଦ" ଭକ୍ତ ସମ୍ମିଳନୀରେ ଜୀବନ୍ତ ଦଗ୍ଧ ହୋଇଥିବା ଭକ୍ତ ମାନଙ୍କର ସ୍ମୃତି ଉଦ୍ଦେଶ୍ୟରେ ରଚିତ ।

# "ଦାରୁ ଦେବତା" (ଏକ ବନ୍ଦନା)



ଦାରୁରେ ହୋଇଛି ଗଢା ଶରୀର ତୁମର
ତୁମେ କି ବୁଝିବ ଦୁଃଖ ଦୈନ୍ୟ ମଣିଷର ।
କିଛି ଦେବ, ଆଉ କିଛି ବଢ଼ାଇବ ବୋଲି
ତୁମନାଁ ଦେବତା ଦେଇଛି ମଣିଷ ଖାଲି ।
କିଛି ତ ଦିଅନି କିଛି ବତାଅନି ତୁମେ
ମିଛରେ ଦେବତା ବୋଲାଅ ମରତ ଭୂମେ ।
ନିରବ, ନିଃସ୍ପନ୍ଦ, ନିର୍ବାକ ହୋଇ ବସି
ଷାଠିଏ ପଉଟି ଭୋଗ ଦେଉଅଛ ଗ୍ରାସି ।
ବଡ଼ ବଡ଼ ଚକା ଚକା ଆଖିରେ ଚାହିଁଛ
ଜଳକାଙ୍କ ପରି ଜଳ ଜଳ ଅନାଉଛ ।
କିଛି ନ ଦେଖି ବି ସବୁ ଦେଖୁ ଥିଲା ପରି
କିଛି ନକରି ବି ନିଅ ଖାଲି ବାହାଦୁରି ।
ବସିଛ ଦେବତା ମନ୍ଦିରେ ମଉନ ହୋଇ
ତୁମଦ୍ୱାରା କିଛି କାମ ଦୁନିଆରେ ନାହିଁ ।
ସତେ କିଛି ଦେଲାପରି ଦୁଇହାତ ଟେକି
ମିଛଟାରେ ଖାଲି ଲଗାଇ ଅଛ ଭେଳିକି ।
ତୁମକୁ ଦର୍ଶନ କରିବାପାଇଁ ମଣିଷ
ଯାଇ, ଯଦି ତାର ପ୍ରାଣ ହୋଇଯାଏ ନାଶ ।
କାହିଁକି କିଏ ସେ ତୁମ ପାଶେ ଆଉଯିବ
ଭାଗ୍ୟକୁ ଆଦରି ଦୁଃଖେ ସିନା ପଡ଼ିଥିବ ।
କାଷ୍ଠ ପାଷାଣର ନିର୍ଜ୍ଜୀବ ଦେବତା ପାଇଁ
ମନ୍ଦିର ଗଢା କୋଟି କୋଟି ବ୍ୟୟ ହୋଇ ।

ସଜୀବ ମଣିଷ ଇତର ପ୍ରାଣୀଙ୍କ ସମ
ଇତସ୍ତତ ବୁଲେ ନପାଇ ଟିକିଏ ଧାମ
ଦୁଃଖ ଯନ୍ତ୍ରଣା, ବ୍ୟଥା ଓ ବେଦନା ସହି
ଦୁଇ ଓଳା ମୁଠେ ଖାଦ୍ୟ ପାଏନା କେ କାହିଁ ।
ମଜା ମଇଲିସ୍ ସୁଖ ସଂଯୋଗରେ କିଏ
ବିଳାସ ବ୍ୟସନେ ଆଜୀବନ ଦିନ ନିଏ ।
ସତ୍ ବୋଲି ତୁମେ, ସତ୍‌ପଥରେ ଯେ ଚାଲେ
ଭୋକ ଉପାସରେ ଗଡ଼ି ମରନ୍ତି ତା ପିଲେ
ଅନ୍ୟାୟ ଅନୀତି ଯେତିକି କରୁଛି ଯିଏ
ସେତିକି ସୁଖରେ ଜୀବନ ବିତାଏ ସିଏ ।
ଦେବତା ଓ ଧର୍ମ ସବୁକିଛି ଅଟେ ମିଛ
କର୍ମ ହିଁ ସଂସାରେ ସାର ଆଉ ସବୁ ପଛ
ଯେପରି କରମ ସେପରି ଭୁଞ୍ଜିବ ଫଳ
କର୍ମ ଅଟେ ଧର୍ମ କର୍ମହିଁ ସବୁର ମୂଳ
ଯାବତ କୁକର୍ମ କରି ହରିନାମ ନେଲେ
ହୁଏ ନାହିଁ ପୁଣ୍ୟ ରାମ ରାମ ଖାଲି ହେଲେ ।
ଆଚରଣ ଶୁଦ୍ଧ ହେଲେ ସିନା ହେବ ଧର୍ମ
ଧର୍ମ ଅରଜନ ପାଇଁ ଲୋଡ଼ା ସତକର୍ମ
ସତକର୍ମ କଲେ ଇଶ୍ୱର ହୋଇବେ ଖୁସି
ମୂଲ୍ୟନାହିଁ ମିଛେ ଦେବତାଙ୍କ ନାମ ଘୋଷି ।



# ଶିବ



ନିର୍ଜନ ଶ୍ମଶାନେ ବାସ
ଭୂତ ପ୍ରେତ ସାଥୀ ସହଚର
ଆଳାପ ଯୋଗିନୀ ସାଥେ
କାଳକୂଟ ଗରଳ ଆହାର ।୧।

ସବୁ ଥାଇ କିଛି ମୋର ନାହିଁ
ବୁଲୁଛି ମୁଁ ସାଜି ଯାଯାବର
ଜୀବନ ମୋ ନିରସ ବିରସ
ପାଲଟିଛି ନିର୍ବାକ ନିଥର ।୨।

ସାଜିଛି ମୁଁ ଜିତେନ୍ଦ୍ରିୟ ଆଜି
ବିତସ୍ପୃହ ସ୍ନେହ ଓ ପ୍ରେମର
ତଥାପି ନିର୍ଲ୍ଲଜ କାମ
ବେଳେ ବେଳେ ବିନ୍ଧେ ଫୁଲଶର ।୩।



ଭକ୍ତ ପ୍ରେମେ ବସ ମୁହିଁ
ଭକତଙ୍କୁ ଯାଚି ଦିଏ ବର
ବିନାଶ ମୋ ଇଛନ୍ତି କେତେକ
ବରପ୍ରାପ୍ତ ମୂଢ ଭସ୍ମାସୁର ।୪।

ଅବିନାଶୀ ମୃତ୍ୟୁଞ୍ଜୟ ମୁହିଁ
କାଳଜୟୀ ମୁଁ ଶିବ ଶଙ୍କର
ରଚିବି ମୁଁ ପ୍ରଳୟ ତାଣ୍ଡବ
ତ୍ରିଶୂଳ ମୋ ମହା ଭୟଙ୍କର ।୫।

କାଳର ମୁଁ ଅଟେ ମହାକାଳ
ଆଶୁତୋଷ କରୁଣାବତାର
ଅସନ୍ତୋଷ ହୁଏ ଅଭିଶାପ
ଅସହ୍ୟ ମୋ ଗର୍ବ ଅହଂକାର ।୬।



# "ହେ ଈଶ୍ୱର, ମୁଁ ତୁମକୁ ପ୍ରେମ କରିବି"

ହେ ଈଶ୍ୱର ତମେ ଖାଲି
ଥରେ ମତେ ଦେଖାଦିଅ
ଦେଖିବ, ମୁଁ ତୁମକୁ
କେତେ ନିବିଡ଼ ଭାବରେ
ପ୍ରେମ କରିବି ?
ରାବଣ ପରି ଅପହରଣ କରି ନୁହେଁ
ଦୁଃଶାସନ ପରି ଉଲଗ୍ନ କରି ନୁହେଁ
କିମ୍ବା ବିଶ୍ୱ ସୁନ୍ଦରୀ ଲିନର ଅବରଗିଲ
ଓ ଅଞ୍ଜନାକୁ ଯବରଦସ୍ତ
ଧର୍ଷଣ କଲା ପରି ନୁହେଁ।
ପ୍ରେମ ମୁଁ କରିବି ତୁମ ସୃଷ୍ଟିର
ସମସ୍ତ ପ୍ରାଣୀଙ୍କୁ ସମଦର୍ଶୀ ଭାବେ ।
ବିଶ୍ୱପ୍ରେମ କରିଦିଅ ମୋ ମନେ ଯାଗ୍ରତ
ଦୁନିଆଁର ଯେତେ ସବୁ ବିଷୟ ବାସନା





ପୋଛି ଦିଅ ହୃଦୟରୁ ମୋର
କେବଳ ତୁମରି ପ୍ରେମରେ ମଜି
ପୁରୁଷାର୍ଥ କରିବି ମୋ ମାନବ ଜନ୍ମକୁ।
ମୋ ଦେହ ରୂପୀ ମନ୍ଦିରରେ
ଥରେ ତୁମେ ଆଶୀନ ହୋଇ ଯାଅ ପ୍ରଭୁ,
ମିରାବାଇ ପରି ମୁଁ ତୁମକୁ
ଅତି ନିଜର କରି ନେବି ।
ଆଉ ଦ୍ରୌପଦୀ ପରି । ଯେତେ ସବୁ ମୋର
ଆତ୍ମାଭିମାନ,ଗର୍ବ, ଦମ୍ଭ ଆଉ ଅହଂକାର
ତୁମକୁ ସମର୍ପଣ କରିଦେଇ
ମୁଁ ନିର୍ଲିପ୍ତ ହୋଇଯିବି ।
ରାଧାରାଣୀ ଭଳି,
ତୁମ ସହ ପରକୀୟା ପ୍ରେମ କରି
କେବଳତୁମରି ପ୍ରେମରେ ମଜି, ମଜାଇ
ହଜି, ହଜାଇ ଦେବି ମୋର
ସମସ୍ତ ସତ୍ତା ।



# ଯାଉଛି ଦାରୁ ପିଇ ମୁହିଁ

ଲୋ ଚାନ୍ଦ ମୁହିଁ, ଯାଉଛି ଦାରୁ ପିଇ ମୁହିଁ
ଦାରୁ ନ ପିଇଲେ ନିଶ୍ଚେ ଜୀବନ ହାରିବି ମୁହିଁ, ଚାନ୍ଦ ମୁହିଁ....
ଚୁଟି କାଟି କଲୁ ତୁ ଲୋ କେଶ ମୁକୁଳା
ଡ୍ରେସ୍ ପିନ୍ଧି ହେଲୁ ତୁ ଲୋ ଅଧା ଲଙ୍ଗଳା
ଘରେ ତୋ ମନ ନାହିଁ, ବାହାରେ ବୁଲୁ ଯାଇ
କାମ ଦାମରେ ତୋର ଟିକିଏ ମନ ନାହିଁ
ଚେହେରାକୁ ଦେଖାଇ ପ୍ରେମରେ ହେଉ ବାଇ,
ପୋଡ଼ା ମୁହିଁ, ପିଇ ସାବାଡ଼ କରିବଇଁ, ଲୋ ଘୋଡ଼ା ମୁହିଁ.... ।।୧
ଲାଜ ଭୟ ଛାଡ଼ି ହେଲୁ ଅଣ୍ଡିରା ଚଣ୍ଡି
ପରକୀୟା ପ୍ରୀତି କରୁ ବେଳ ତୁ ଉଣ୍ଡି
ଶାଶୁ ଶଶୁର ତୋର, ଯାଆ ଓ ଦେଢ଼ଶୁର
ନଣନ୍ଦ ଓ ଦିଅର, ସମସ୍ତେ ହେଲେ ପର,
ନାହିଁ ସ୍ନେହ ଆଦର, କାହାଠାରେ ତୋହର,
ଘୋଡ଼ା ମୁହିଁ ରହିବୁ ବାପଘରେ ଯାଇ, ଲୋ ପୋଡ଼ାମୁହିଁ.... ।।୨
ଆଲୋ ଡରୋଉଚୁ ଯଉତୁକ କେଶ୍ କରିବୁ
ସମସ୍ତଙ୍କୁ ଆମର ତୁ ଜେଲକୁ ନେବୁ ।
ଛାଡ଼ିଲେ ଶାଶୁଘର, ଭୋଗିବୁ ଫଳ ତାର
ଭାଇ ଭାଉଜ ତୋର, ପିତାମାତା ଆବର
କେହି ନୁହେଁ ତୋହର ସମସ୍ତେ ହେବେ ପର
ପୋଡ଼ା ମୁହିଁ, ପିଠିରେ ପଡ଼ିବେନି କେହି, ଲୋ ଘୋଡ଼ା ମୁହିଁ... ।।୩
ଆଲୋ, ଦେଖୁଛତ ଦୁନିଆଁରେ ପଡ଼ିଛି ହୁରି
କେତେ ଯେ ଘଟଣା ଘଟେ ଅଜଣା ପରି
ହୁଅତୁ ସାବଧାନ, ସ୍ଥିର କର ତୋ ମନ
ପାଇଛୁ ନାରୀ ଜନ୍ମ, ନୁହଁ ତୁହି ସ୍ୱାଧୀନ
ପର ଘରେ ଜୀବନ କାଟିବୁ ନିଶିଦିନ,
ଘୋଡ଼ାମୁହିଁ, ଦୁଃଖକୁ ସୁଖ ମଣି ତୁହି, ଲୋ ଘୋଡ଼ା ମୁହିଁ... ।।୪
ଆଲୋ ନିଜର କରିବୁ ଯେବେ ତୁ ଆମ ଘର
ଦାରୁ ପିଆ ଛାଡ଼ିବି ମୁଁ ସତ୍ୟ ମୋହର,
ସୁଗୁଣରେ ତୋହର ସବୁଙ୍କୁ ବସ କର
ସ୍ନେହ, ପ୍ରେମ, ଆଦର, ମିଳେ କଲେ ନିଜର
"ପତି ଦେବତା" ତୋର, ଭାବିଲେ ହୃଦୟର
ପ୍ରିୟ ସହି, ନିଜର ହେବୁ ତେବେ ତୁହି
ଲୋ ଚାନ୍ଦ ମୁହିଁ, ଛାଡ଼ିବି ଦାରୁପିଆ ମୁହିଁ ।। ❑





ଜନ୍ମ : ୧୯୩୭ ମାର୍ଚ୍ଚ ୧୫ ତାରିଖ

ଜନ୍ମସ୍ଥାନ : କୋରପିଠା ଗ୍ରାମ । ବାସସ୍ଥାନ : ଓଡ଼ଗାଁ, ଜିଲ୍ଲା - ନୟାଗଡ଼

ପିତା : ୰ ଗୋପିନାଥ ମିଶ୍ର, ମାତା : ୰ ସେବତୀ ଦେବୀ

କବିତା ରଚନା ଆରମ୍ଭ : ୧୯୬୪ ମସିହା

**ପ୍ରକାଶିତ ପୁସ୍ତକ :**

୧. ପ୍ରଭୁ ରଘୁନାଥ ଭଜନମାଳା ।

୨. ମନ ମରାଳ ଝୁରେ ।

୩. ଉର୍ବଶୀ ।

୪. ଜୟଶ୍ରୀ ରଘୁନାଥ ।

୫. ଏଠି ସବୁ ଚଳିବ (ବ୍ୟଙ୍ଗ କବିତା ସଂକଳନ)

**ପ୍ରକାଶନ ପ୍ରତୀକ୍ଷାରେ :**

୧. ଜୀବନ ଓ ଜ୍ୱଳନ (କବିତା ସଂକଳନ ମାନବ ଧର୍ମୀ)

୨. ଦଗ୍ଧ ଫୁଲବନ (ଖଣ୍ଡ ବାକ୍ୟ)

୩. ଆ ଜହ୍ନ ମାମୁଁ (ଶିଶୁ କବିତା ସଂକଳନ)

୪. ଅଳି ଓ କଳି (କବିତା ସଂକଳନ)

୫. ନିସଂଗ ନିଶିଥ (କ୍ଷୁଦ୍ରଗଳ୍ପ ସଂକଳନ)

୬. ଓଡ଼ିଶାର ଦଣ୍ଡ ନୃତ୍ୟ ଓ ଝାମୁ ଯାତ୍ରା (ପ୍ରବନ୍ଧ ସଂକଳନ)